

THE

# Utkal Union Conference

THE TWELFTH SESSION

29th-30th December

1916

BALASORE.



ଉତ୍କଳ ସମ୍ମିଳନୀ [illegible]

୧୨ଶ ଅଧିବେଶନ

[illegible]

[illegible]

[illegible]



# ଉତ୍କଳସମ୍ମିଳନୀ ସଭାର

## ଷଷ୍ଠ ଅଧିବେଶନ

## ବାଲେଶ୍ୱର ।



ପ୍ରଥମ ଦିବସ

ସନ ୧୯୧୭ ମସିହା ।

ସ୍ଥାନ—ବାଲେଶ୍ୱର ସ୍ମିଥ୍ କୋଠି ସଲଗ୍ନ ପ୍ରଶସ୍ତ ପଡ଼ିଆରେ ନିର୍ମିତ ସୁବୃହତ ସୁସଜ୍ଜିତ ମଣ୍ଡପ ।

ସମୟ—୧୯୧୭ ସାଲ ଡିସେମ୍ବରମାସ ତା ୨୯ ରିଖ ଦିବା ଘ ୧୨ ଟା ।

ଗଞ୍ଜାମ, ଜୟପୁର, ମେଦିନୀପୁର, ଉତ୍କଳ, ମାନ୍ଦ୍ରାଜ ଅଧିବାସୀ ପ୍ରସିଦ୍ଧ ଓ ଗଣ୍ୟମାନ୍ୟ ପ୍ରାୟ ସାର୍ଦ୍ଧ ତିନିସହସ୍ର ଲୋକ ଉପସ୍ଥିତ ହୋଇଥିଲେ । ଏ ବର୍ଷ ସମ୍ମିଳନୀର ବିଶେଷତ୍ୱ ଏହି ଯେ ଜନସାଧାରଣଙ୍କର ସମ୍ମିଳନୀପ୍ରତି ଆକର୍ଷଣ ଓ ମମତା । ସମ୍ମିଳନୀ କେବଳ ଜଣକର ବା କେତେକ ଜଣଙ୍କର ସମ୍ପତ୍ତି ବୋଲି ଯେଉଁମାନେ ଧାରଣା କରିଥିଲେ ଏ ବର୍ଷ କାର୍ଯ୍ୟବିବରଣୀ ସେମାନଙ୍କ ଭ୍ରମ ଦୂରୀକରଣର ଯଥେଷ୍ଟ ଉପକରଣ ପ୍ରଦାନ କରିଅଛି । ସମ୍ମିଳନୀ ସମସ୍ତ ଓଡ଼ିଆଜାତିର ଅନୁଷ୍ଠାନ ।

ଏହି ଦିବସର କାର୍ଯ୍ୟାରମ୍ଭ ପୂର୍ବରୁ ବ୍ୟାସପ୍ରତିମ ବୃଦ୍ଧ କବି ଓ ଔପନ୍ୟାସିକ ସର୍ବଜନାଦୃତ ବାବୁ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ନିମ୍ନଲିଖିତମତେ ଜଗଦୀଶ୍ୱରଙ୍କ ପ୍ରାର୍ଥନା କଲେ ।

ହେ ସର୍ବଶକ୍ତିମନ୍ ! ହେ ଦୟାମୟ ! ତୁମ୍ଭ ଅନୁଗ୍ରହରୁ ଆଜ ଆମ୍ଭେମାନେ ଏକତ୍ରିତ ହୋଇଅଛୁଁ । ସ୍ୱଜାତି ମଙ୍ଗଳବିଧାନ ନିମନ୍ତେ ଏକତ୍ରିତ ହୋଇଅଛୁଁ । ଆମ୍ଭମାନଙ୍କର ଦୁର୍ଗତି ଦୂର କରିଦିଅ । ସମସ୍ତପ୍ରକାର କୁସଂସ୍କାର ଦୂର କରିଦିଅ । ହେ ପ୍ରଭୁ ! ଶକ୍ତି ଦିଅ । ଜୀବନରେ, ଯୌବନରେ ବଳୀୟାନ୍ କର ମା ଏହି ଯବନ ଭୂମି ଯାହା ସ୍ୱରାଜରେ ସର୍ବପ୍ରଧାନ ଭୂମି ଥିଲେ । ବୌଦ୍ଧଧର୍ମ ଓ ବୈଷ୍ଣବଧର୍ମଦ୍ୱାରା

ଏହାର ଧୂଳ ଦେବଦେବଙ୍କ ହୋଇଥିଲା । ଯେଉଁ ବେଳେ ଅମ୍ଭମାନଙ୍କର ପରମଧାମ ବୃନ୍ଦାବନ ଅରଣ୍ୟ ଥିଲା ସେବେଣାର ପୂଜାପଦ୍ଧତି ବୃନ୍ଦାବନକୁ ଆଦର୍ଶ ହୋଇଥିଲା ଓ ସେହି ଆଦର୍ଶର ଅନୁକରଣରେ ବୃନ୍ଦାବନର ପୂଜାପଦ୍ଧତି ବର୍ଦ୍ଧିତ ହେଲା ।

ଆଜି ସେହି ଦେଶ ଅଛି, ସେହି ପବିତ୍ର ତପୀମାନେ ଆଜି ପ୍ରବାହିତ ହେଉ-ଅଛନ୍ତି କିନ୍ତୁ ସେହି ଅମ୍ଭେମାନେ ଅଧୋଗାମୀ । ବର୍ତ୍ତମାନ ହେ ଜଗଦୀଶ୍ୱର ! ଆଶୀର୍ବାଦ କର ଅମ୍ଭେମାନେ ଶିକ୍ଷିତ ହେଉଁ, ଅମ୍ଭମାନଙ୍କର ଦୁର୍ଦ୍ଦଶା ଦୂର ହେଉ, ହେ ଭ୍ରାତୃଗଣ ! ଆପଣମାନେ ଦଣ୍ଡାୟମାନ ହୋଇ ସେହି ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କର, ଅମ୍ଭମାନଙ୍କ ସମ୍ମିଳନୀର କାର୍ଯ୍ୟ ସଫଳ ହେଉ । ଓଁ ଶାନ୍ତିଃ ଶାନ୍ତିଃ ।

---

ପ୍ରାର୍ଥନାପରେ ନିମ୍ନ ଲିଖିତ ସ୍ୱରେ ସଙ୍ଗୀତ ହାରମୋନିୟମ ସହ ଗୀତ ହେଲା ।

## ସ୍ୱାଗତ ସଙ୍ଗୀତ ।

ଆଜି ଆସ ଏ ପୀଠ ଭବନେ ।
ଆସ ହେ ସୋଦରେ ଡାକୁଛୁଁ ଆଦରେ
ଜନନୀ ଚରଣ ପୂଜନେ । ଘୋଷା ।

ବହିତ ବେଦନା ଆଜି ଏ ଶ୍ମଶାନେ,
ଡାକୁଅଛୁଁ ଆସ ଆସ ଭାଇମାନେ,
ତୋଳି ବଣ ଫୁଲ ଶୁଣ ନ ଭୁଲିବୀ
ରଖିଛୁଁ ସଜାଡ଼ି ଯତନେ । ୧ ।

ଆସ ଆଜ ଭାଇ ହୋଇ ଏକେ ମିଳି
ଯୋଡ଼ି କର-ପୁଟେ ଦେବା ପୁଷ୍ପାଞ୍ଜଳି
ଦୂର୍ବା ଅର୍ଘ୍ୟ ଆଉ ଯମୁନା ସଲିଳ,
ଢାଳିବା ଜନନୀ ଚରଣେ । ୨ ।

ଜପ ତପ ଆଉ ସେବା ଉପଚାର
ବହୁତ କୁଟୀରେ ଶାକ ଅନ୍ନସାର
ସ୍ନେହ ପ୍ରୀତି ବୋଲି ଦୀନ ଉପହାର,
ଅର୍ପୁଁ ଭକତ ମନରେ । ୩ ।

ନାହିଁ ଶଙ୍ଖ, ଭେରୀ ନାହିଁ ବାଦ୍ୟ ଯନ୍ତ୍ର,
ଶୁଣା ନାହିଁ କଣ୍ଠ ଆବାହନ ମନ୍ତ୍ର,
ସାଥ ଏକାଠାରେ ଜନନୀର ଜୟ
କରିଥାନ୍ତି ହେଉ ସଙ୍ଗେ । ୪ ।
ନାହିଁ ସେ ବିଭବ ନାହିଁ ପୂର୍ବଶୋଭା,
ବାଳେଶ୍ୱର ଅଙ୍ଗ ପଥର ଭଗ୍ନା,
ଅନ୍ନ ବସ୍ତ୍ର ହୀନ, ଫାଟୁଛି ମେଦିନୀ
"ହା ଅନ୍ନ, ହା ଅନ୍ନ" ଶବ୍ଦରେ । ୫ ।
ବଳଙ୍ଗ ବକ୍ଷରେ ଭାସୁ ନାହିଁ ପୋତ
ସୁଲୁପ, ବୋଇତ, ଡଙ୍ଗା ଶତ ଶତ,
ଲଭନ୍ତି ସକଳ ସଲିଳ ସମାଧି
ଲୁଟିଲ କପାଳ ଲେଖରେ । ୬ ।
ନାହାନ୍ତି ଆଉ ସେ ଶିଳ୍ପୀ କାରିଗର,
କାହିଁଛନ୍ତି ଧନୀ ବଣିକ ନିକର
ମୃତ ସାକ୍ଷୀ ଭଗ୍ନ ଅଟ୍ଟାଳିକାଗଣ,
ଟେକିଛନ୍ତି ଶିର ଗଗନେ । ୭ ।

ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ବି, ଏ,

---

ସଙ୍ଗୀତ ସ୍ୱର ଉଦାତ୍ତ ବାୟୁମଣ୍ଡଳରେ ମିଶିବା ପରେ ଅଭ୍ୟର୍ଥନା ସମିତିର ସଭାପତି ନିଜ ଅଭିଭାଷଣ ପାଠ କଲେ ।

## ଅଭ୍ୟର୍ଥନା ସମିତିର ସଭାପତିଙ୍କ ଅଭିଭାଷଣ ।

ଭାଇମାନେ !

ଆଜି ଆମ୍ଭମାନଙ୍କର ଅତି ଶୁଭ ଦିବସ । ଉତ୍କଳଖଣ୍ଡର ସୁଦୂରପ୍ରାନ୍ତ ଦେଶମାନଙ୍କରୁ ଉତ୍କଳର ବରେଣ୍ୟ ପ୍ରତିନିଧିଗଣ ଆଜି ଏହି ପବିତ୍ର ମଣ୍ଡପରେ ସମବେତ ହୋଇଅଛନ୍ତି । ରାଜା, ପ୍ରଜା, ଧନୀ, ଦରିଦ୍ର, ପ୍ରଭୁ, ଭୃତ୍ୟ ସମସ୍ତେ ନିଜନିଜର ସ୍ୱତନ୍ତ୍ରତା ଭୁଲି ଏକ ଅନିର୍ବଚନୀୟ ମହାଶକ୍ତିରେ ଅନୁପ୍ରାଣିତ ହୋଇ ପରସ୍ପର ଭାଇ ଭାଇ ବୋଲି ଆଲିଙ୍ଗନ କରୁଅଛନ୍ତି ସମସ୍ତଙ୍କ ହୃଦୟରେ ଏକ ଉଦାର ଆକର୍ଷଣ, ଏକ ଅଭିନବ ଆଶା, ଏକ ଜୀବନ୍ତ ଜାତୀୟତା ଜାଗରିତ ହୋଇଅଛି ।

ଏହା ଦର୍ଶନ କରି କେଉଁ ନେତ୍ର, ଅବା ଉତ୍କଳ ପୁତ୍ରର ହୃଦୟ ଉତ୍ଫୁଲ୍ଲ ହୋଇ ନ ଉଠିବ ? କାହାର ପ୍ରାଣ ପବିତ୍ର ଜାତୀୟତାର ଅମୃତରସରେ ପ୍ଲାବିତ ହୋଇ ନ ଯିବ ?

ଆମ୍ଭମାନଙ୍କର ସୁଦୃଷ୍ଟରେ ଏହି ମାହେନ୍ଦ୍ରଯୋଗର ବିରାଟ ଅନୁଷ୍ଠାନ ଚିରସ୍ମରଣୀୟ ହୋଇ ରହିଲା । ବାଲେଶ୍ୱରର ଇତିହାସ ଏହି କାର୍ଯ୍ୟ ଭବିଷ୍ୟତ ବଂଶଧରମାନଙ୍କ ନିକଟରେ ବଜ୍ରନିର୍ଘୋଷରେ ଘୋଷଣା କରିବ । ଆମ୍ଭମାନଙ୍କର ଏ ସୌଭାଗ୍ୟ ଯେ ଏହି ମହାମିଳନ ଆମ୍ଭମାନଙ୍କର କୁଟୀର-ପ୍ରାଙ୍ଗଣରେ ସଂଘଟିତ ହେଉଅଛି, ଏହାଠାରୁ ବଳି ଆନନ୍ଦର କଥା, ଗୌରବର କଥା, ଶ୍ଳାଘାର କଥା ଆଉ କଣ ହୋଇପାରେ ? କିନ୍ତୁ ଏହି ଆନନ୍ଦ ଉତ୍ସବ ଆମ୍ଭମାନଙ୍କ ମନରେ ବିଷାଦର ବିଗତ ବାର୍ତ୍ତା ଆନୟନ କରୁଅଛି । ଆଜି ଯଦି ବାଲେଶ୍ୱରର ପ୍ରକୃତ ଜନନାୟକ, ଉତ୍କଳଜନନୀର ବରପୁତ୍ର, ପରଶାନ୍ତ ମହାରାଜା ବୈକୁଣ୍ଠନାଥ ଥାଆନ୍ତେ, ତାହାହେଲେ ଏହି ଉତ୍ସବର ବିରାଟ ଶୋଭାଭାବରେ ଦଶଦିଗନ୍ତ ଉଜ୍ଜ୍ୱଳ ଉଠନ୍ତା । ଦୁର୍ଗତ ଦୀନମାନଙ୍କର ସମ୍ବର୍ଦ୍ଧନାର୍ଥ ଅତିଥିବତ୍ସଳ ମହାରାଜା ଦେଶଦେଶାନ୍ତରରେ ଆପ୍ୟାୟନ କରିଥାନ୍ତେ—ଆଜି ହାଏ ! ସେ ବୈକୁଣ୍ଠନାଥଙ୍କର ଆତ୍ମା ବୈକୁଣ୍ଠରେ ରହି ଆମ୍ଭମାନଙ୍କର ଏହି ଦୀନତା ଓ ଅଯୋଗ୍ୟତା ଦେଖି କେତେ କ୍ଷୁବ୍ଧ ହେଉଥିବ । ମୋର ପୂଜ୍ୟପାଦ ଜ୍ୟେଷ୍ଠଭ୍ରାତା ରାୟ ବାହାଦୁର ସାମନ୍ତ ଶ୍ରୀ ରାଧାଚରଣ ଜୀବିତ ଥିଲେ ମହାରାଜାଙ୍କ ଅଭାବ ଏତେ ବାଧି ନ ଥାନ୍ତା, ରାଧାଚରଣଙ୍କର ଇଚ୍ଛା ଓ ଅଭିପ୍ରାୟ ଅନୁଯାୟୀ ଆମ୍ଭେମାନେ ଗତବର୍ଷ ସମ୍ମିଳନୀକୁ ବାଲେଶ୍ୱର ନଗରକୁ ନିମନ୍ତ୍ରଣ କରିବାରେ ସାହସୀ ହୋଇଥିଲୁଁ । ସେତେବେଳେ କିଏ ଜାଣିଥିଲା ଯେ କ୍ରୂର କାଳ ଅକାଳରେ ତାହାଙ୍କୁ ଛଡ଼ାଇ ନେଇଯିବ—କିଏ ଜାଣିଥିଲା ଯେ ମାତୃପୂଜାର ଏହି ମହୋତ୍ସବ ମଣ୍ଡପରେ ତାହାଙ୍କର ମୂର୍ତ୍ତି ଲୁଚିଯିବ ? ଆମ୍ଭେମାନେ ସେହି ମହାତ୍ମାମାନଙ୍କର ଏପରି ଅଯୋଗ୍ୟ ବଂଶଧର ଯେ ସେମାନଙ୍କର ପବିତ୍ର ଆସନରେ ସମାସୀନ ହେବାକୁ ନିଜକୁ ଲଜ୍ଜା ବୋଧ ହେଉଅଛି । ସେମାନଙ୍କର ଅଭାବରେ ହତଶ୍ରୀ ବାଲେଶ୍ୱର ଆଜି ଶ୍ମଶାନ ହୋଇ ପଡ଼ିଅଛି । ଆଜି ବାଲେଶ୍ୱରରେ ଦେଖାଇବାର କିଛି ନାହିଁ । ଦିନେ ଯେଉଁ ବୁଢ଼ାବଳଙ୍ଗ ସମୁଦ୍ରଗାମୀ ପୋତାବଳୀର ଧ୍ୱଜମାଳାରେ ବିଭୂଷିତ ହେଉଥିଲା, ଯେଉଁ ବାଲେଶ୍ୱର ଉତ୍କଳର ନୌବାଣିଜ୍ୟର ସର୍ବପ୍ରଧାନ କେନ୍ଦ୍ରସ୍ଥଳୀ ଥିଲା, ଯେଉଁ ସ୍ଥଳ ଶତସହସ୍ର ଶିଳ୍ପୀ ଓ ବଣିକମାନଙ୍କର ସମୃଦ୍ଧ ବିପଣୀଶ୍ରେଣୀରେ ପରିଶୋଭିତ

ଉପଯୋଗୀ ଓ ସ୍ୱଭାବତଃ ପ୍ରଶସ୍ତ । ଉତ୍କଳଖଣ୍ଡ ଶିଳ୍ପ ବାଣିଜ୍ୟର ଉପାଦାନରେ ପରିପୂର୍ଣ୍ଣ । ସମସ୍ତ ସ୍ଥଳମାନଙ୍କୁ ଏ ବିଷୟରେ ଦୃଷ୍ଟିପାତ କରିବାକୁ ମୁଁ ଅନୁରୋଧ କରୁଅଛି । ଆମ୍ଭମାନଙ୍କର ସଦାଶୟ ଗବର୍ଣ୍ଣମେଣ୍ଟ ମଧ୍ୟ ସାହାଯ୍ୟ କରିବାକୁ ପ୍ରସ୍ତୁତ । ଭରସା ଅଛି ସରକାର ବାହାଦୁର ଯୁଦ୍ଧର ଅବସାନ ପରେ ବାଣିଜ୍ୟାଦିର ସୁବିଧା ନିମନ୍ତେ ଉତ୍କଳରେ ଛୋଟିଏ ବାଣିଜ୍ୟ ବନ୍ଦର ପ୍ରତିଷ୍ଠା କରିବେ ଓ ଢେଙ୍କାନାଳ ଓ ରେଲପଥର ବୃଦ୍ଧି କରିବେ ।

ଦେଶର ଓ ଜାତିର ସର୍ବାଙ୍ଗୀନ ଉନ୍ନତି ଶିକ୍ଷାଉପରେ ନିର୍ଭର କରେ, ଯେଉଁ ପ୍ରଣାଳୀରେ ପ୍ରାଥମିକଶିକ୍ଷା ଚାଲୁଅଛି ତାହା ଦେଶର ଉନ୍ନତିକଳ୍ପେ ସମ୍ପୂର୍ଣ୍ଣ ଉପଯୋଗୀ ନୁହେ । ଆଶା କରୁଁ ଆମ୍ଭମାନଙ୍କର ଉଦାର ଗବର୍ଣ୍ଣମେଣ୍ଟ ଅଦୂର ଭବିଷ୍ୟତରେ ସେହି ଅଭାବମାନ ମୋଚନ କରିବେ । କିନ୍ତୁ ଉଚ୍ଚଶିକ୍ଷାର ଅସଂକୁଳତା ସର୍ବଥା ଜାତୀୟ ଉନ୍ନତିର ପ୍ରତିବନ୍ଧକ । ଆଶା କରୁଁ ଗବର୍ଣ୍ଣମେଣ୍ଟ ଏଥିର ଯଥୋଚିତ ସୁବିଚାର କରିବେ । କିନ୍ତୁ ଏ ବିଷୟରେ ଦେଶବାସିଙ୍କର ମଧ୍ୟ କର୍ତ୍ତବ୍ୟ ଅଛି ।

ସମଗ୍ର ଓଡ଼ିଆଭାଷୀ ପ୍ରଦେଶମାନ ବିଭିନ୍ନ ଶାସନାଧୀନରେ ବିଚ୍ଛିନ୍ନଭାବରେ ରହିଥିବାରୁ ଜାତିର ସର୍ବାଙ୍ଗୀନ ଉନ୍ନତି ପକ୍ଷରେ ଅନ୍ତରାୟ ଘଟୁଅଛି । ଓଡ଼ିଆଜାତିର ସମସ୍ତ ବଳ ପୁଞ୍ଜୀଭୂତ କରି ସମଷ୍ଟିଭାବରେ ଛିଡ଼ା ହେବାକୁ ସକ୍ଷମ ହୋଇ ପାରୁନାହାନ୍ତି । ଏ ବିଷୟରେ ଆମ୍ଭେମାନେ ଆବେଦନ, ନିବେଦନ କରିଅଛୁଁ କିନ୍ତୁ ଅଦ୍ୟାବଧି ତହିଁର ଆଶାନୁରୂପ ଫଳ ପାଇ ନ ଥିଲେ ସୁଦ୍ଧା ହତାଶ ହେବାର କୌଣସି କାରଣ ନାହିଁ । ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଆଶା ଓ ବିଶ୍ୱାସ ଅଛି ଯେ ଉନ୍ନତି-କାମୀ ପ୍ରଜାରଞ୍ଜକ ବ୍ରିଟିଶ ଗବର୍ଣ୍ଣମେଣ୍ଟ ଦିନେ ଆମ୍ଭମାନଙ୍କର ଗୁହାରି ଶୁଣିବେ । ସେଥିପାଇଁ ନିଶ୍ଚେଷ୍ଟ ହୋଇ ରହିବା ଉଚିତ ନାହିଁ, ଯତ୍ନ ଓ ଉଦ୍ୟମର ଫଳ ଅବଶ୍ୟମ୍ଭାବୀ । ନିଶ୍ଚୟ ସେଦିନ ଆସିବ ଯେଉଁଦିନ ସମସ୍ତ ଓଡ଼ିଆଭାଷୀ ପ୍ରଦେଶମାନ ଏକ ସ୍ୱତନ୍ତ୍ର ଶାସନାଧୀନରେ ସମ୍ମିଳିତ ହୋଇ କୋଟି-କଣ୍ଠରେ ବ୍ରିଟିଶ ନ୍ୟାୟପରତାର ଗୁଣ କୀର୍ତ୍ତନ କରିବେ ।

ବନ୍ଧୁମାନେ ! ଆଉ ଆପଣମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କରିବି ନାହିଁ । ଆପଣମାନଙ୍କ ସେବାରେ ଆମ୍ଭମାନଙ୍କର ଅଯୋଗ୍ୟତା ଓ ଅନିପୁଣତା ଆମ୍ଭେମାନେ ବୁଝିପାରୁଅଛୁଁ । ଆପଣମାନେ ଏତେ କଷ୍ଟ କରି ଆମ୍ଭମାନଙ୍କ ଦରିଦ୍ର କୁଟୀରରେ ପଦାର୍ପଣ କରିଅଛନ୍ତି, କିନ୍ତୁ ଆମ୍ଭେମାନେ ତାହାର ଯଥାଯୋଗ୍ୟ ସତ-

ଚେଷ୍ଟା କରିବାକୁ ଅକ୍ଷମ । ପ୍ରାର୍ଥନା କରୁଅଛୁଁ ଯେ ଆପଣମାନେ ନିଜର ଉଦାର ଗୁଣରେ ଏହି ଅଯୋଗ୍ୟ ଲେଖକମାନଙ୍କର ଧୃଷ୍ଟତା ଓ ସମସ୍ତ ଦୋଷ ମାର୍ଜନା କରିବେ ।

ଶ୍ରୀ ରାଧାଗୋବିନ୍ଦ ଦାସ ।

---

ସଭାରେ ଉପସ୍ଥିତ ସମସ୍ତ ଉତ୍କଳୀୟମାନଙ୍କ ଅନୁରୋଧକ୍ରମେ କାର୍ଯ୍ୟନିର୍ବାହକସମିତି ଢେଙ୍କାନାଳ ସଭାପତି ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବ ମହାମାନ୍ୟ ମଣ୍ଡଳୀ ଉତ୍କଳହିତୋଦୟ ସମ୍ମିଳନୀର ସଭାପତିରୂପେ ବରଣ ହେଲେ । ସଭାପତି ଆସନ ଗ୍ରହଣ କଲାରୁ ନିମ୍ନଲିଖିତ ଜାତୀୟ ସଙ୍ଗୀତଟି ଗୀତ ହେଲା । ଗାନ ସମୟରେ ସମସ୍ତ ଦ୍ରଷ୍ଟାଗଣ ଶ୍ରୋତୃମଣ୍ଡଳୀ ଦଣ୍ଡାୟମାନ ହୋଇ ସଙ୍ଗୀତରଚୟିତା ସ୍ୱର୍ଗୀୟ କବିବର ଶ୍ରୀ ରାଧାନାଥ ରାୟଙ୍କ ସ୍ୱର୍ଗୀୟ ଆତ୍ମାକୁ ସମ୍ମାନ କରିଥିଲେ ।

## ଜାତୀୟ ସଙ୍ଗୀତ ।

ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପଲତେୟଂ,
ଜନନୀବତ୍ସଲ ତସ୍ୟ ଗଣେ ତୁ
ସମ୍ୟକ୍ ଧର୍ମ୍ମ ବିଧେୟଂ ।
ହିମଗିରି ସୀମନ୍ତ-ମସ୍ତକମିବ
ସମ୍ମୁଖ ପନ୍ଥଗତ ପାର୍ଶ୍ୱଂ
ଅସ୍ମଦ୍ ଜନ୍ମଦ-ମଙ୍ଗଳ-ମଙ୍ଗଳଂ
ଶୋଭିତ ପୁଷ୍ପତ ମାର୍ଗଂ ।
ଧନଜନରତ୍ନପୂର୍ଣ୍ଣଂ ସୁରତବର୍ଣ୍ଣଂ
ସର୍ବୋତ୍କର୍ଷ ନିବାସଂ ।
ଭାରତଜନ୍ମନି ଭୂତମସ୍ମାଭି—
ର୍ନିବସିତ ସୌଭାଗ୍ୟବତାଂ
ଉତ୍କଳ ଗୌଡ଼ାନ୍ଧ୍ରୀୟାଃ ସର୍ବେ
ଯେ ବସୁମତ ସତ୍ୟେବାଃ,
ଏତେ ସ୍ଥପତ ଜନପଦନା ଧନ୍ୟ
ଭାରତ-ଦତ୍ତ-ଜନକେଭ୍ୟଃ

ଭାରତ ହୃତ ସନ୍ତାପନ ମେବହ
ତାର୍ଯ୍ୟମିଷ୍ଟମବପାଦଂ
ଭାରତବର୍ଷଂ କାମପି ନ ଧାର୍ଯ୍ୟଂ
କଣ୍ଠେ ନ ମୈତ୍ର୍ୟସ୍ୱାନ୍ତଂ ॥
ଭାରତ ପଙ୍କଜଦଳନିଭମହିଳ
ମଣିଜ ମିଛ ଦଦନଂ ଯତ୍ର
ରକ୍ଷ୍ୟ କୃତେ ବସୁମଣ୍ଡ ସମେତା
ବଦ୍ଧଭାଟେହାଲ୍ଲଲ-ସଙ୍ଘ
ଭାରତମେକା ଗଚ୍ଛନ୍ତ୍ୱାଙ୍କଂ
ଦାପସ୍ତ୍ରି ଦୃଢ ଦାନ
ସଙ୍ଗାଦେବୀ ଚଳୁ ଯଉଣଚ ଦର୍ଶ୍ନି
ଭାରତମେବ ନମାମଃ ।
୰ ଗଧାଧାଥ ଗୁପ୍ତ ।

---

ସମ୍ପାଦକ ବାବୁ ଶ୍ରୀ ଦୈବ୍ୟାଶପ୍ରସାଦ ଦାସ ବ ଏଲ୍ ଅନୁପସ୍ଥିତ ଭଦ୍ରବ୍ୟକ୍ତି-ମାନଙ୍କ ସହାନୁଭୂତିସୂଚକ ତାର୍ ଓ ପତ୍ର ପାଠ କଲେ । ସେ ସବୁ ନିମ୍ନରେ ପ୍ରକାଶ କରଗଲା ।

Orissa Commissioner's Office
No. 327 T. J.

From
The Hon'ble Mr. H. LeMesurier
C. S. I. C. I. E. I. C. S.
Commissioner of the Orissa Division,

To
The President,
Executive Committee,
Utkal Union Conference,
Balasore.

Camp Khurda, the 21st Dec. 1916

Sir,

I have the honour to acknowledge the receipt of your letter No. 1893 dated the 17th Dec. 1916, forwarding a copy of resolution No. 1 of the your meeting of the same date.

I am gratified by the kind wish of the Conference that I should attend the meetings and by their offer to send a deputation to explain their object and the present situation. I greatly regret that ading to my engagement I am now on tour in the Puri District and shall not return to Cuttack till the beginning of January. The motives for my tour preclude my being able to postpone it but I hope to have the opportunity of discussing the subject alluded to with the Hon'ble Mr. Das and other members of the proposed deputation with whom I have the honour of being acquainted.

I have the honour
to be Sir.
Your most obedient servant,
Sd. H. LeMesurier
Commissioner

---

ଘନଦାସ୍ୟୂଣ ମିଶ୍ର ଏମେ, ଏ, ବି, ଏଲ
ସମ୍ବଲପୁର
ତା ୨୭।୬।୧୭

Regret cannot join Canference accidentally report sent also correspondence of war contribution which has been kept particularly for consideration of the Conference.

---

ଲାଲ ଶ୍ରୀ ଗଜେନ୍ଦ୍ରସିଂହ ବରିହା
ଜମିଦାର ବୁଢ଼ାସମ୍ବର,
ତା ୨୮।୧୨।୧୭

Regret for my inability to attend Conference but have every sympathy Kabibar Gangadhar Meher and Babu Rajkumar Kar are going on my behalf.

---

ଠାକୁରଷାଦେବ, ବେଗ
ତା ୨୮।୧୨।୧୭

Regret can't attend owing illness.

---

ଭବଗଜ କନକପ୍ରସାଦ ଶର୍ମା
ଡ୍ରୁକହୁଲ୍ଲର ଷ୍ଟ୍ରୀଟ୍, କଲିକତା
ତା ୨୮।୧୨।୧୭

Sorry unable to join for serious illness.

---

ଗଡ଼ଜାତବାସିନୀର ସମ୍ପାଦକ
ତା ୨୮।୧୨।୧୭

Owing to untoward circumstances cannot join sorry, sympathy.

---

ଶ୍ରୀ ଗଦାଧର ରାମାନୁଜଦାସ
ମହନ୍ତ ମହାରାଜ ଏମାରମଠ, ପୁରୀ
ତା ୨୮।୧୨।୧୭

Regret inability to attend the Conference owing to ill health I fully sympathise with the movement.

---

ଶ୍ରୀ ହରିହର ପଣ୍ଡା, ବେଲ, ଗଞ୍ଜାମ
ତା ୨୮।୧୨।୧୭

Greatly regret inability [attend] fervently pray success Couference.

---

ଶ୍ରୀମତୀ ଅନ୍ନପୂର୍ଣ୍ଣା,
ସପ୍ରଣାମ ନିବେଦନମିଦଂ,

ଶ୍ରୀମନ୍ ମହୋଦୟ !

ସମ୍ମିଳନୀ ପକ୍ଷରୁ ଖଣ୍ଡିଏ ନିମନ୍ତ୍ରଣପତ୍ର ପାଇ ଅତି ସନ୍ତୁଷ୍ଟ ହେଲି । ସମ୍ମିଳନୀ ସମ୍ବନ୍ଧେ ମୋର ଯାହା କର୍ତ୍ତବ୍ୟ ତାହା ଏଥି ସହିତ ପଠାଯିବା ଦୁଇଗୋଟି ପଦ୍ୟରେ ମନଭାବ ବ୍ୟକ୍ତ କରି ଲେଖି ଦେଉଅଛି । ଆପଣଙ୍କୁ ଉପଯୁକ୍ତ ବିବେଚିତ ହେଲେ ସଭାରେ ପ୍ରକାଶ କରିପାରନ୍ତି ।

---

ଶ୍ରୀ ଗୋପୀନାଥ ଦାସ ଶର୍ମା ( ରଜଗୁରୁ )
ପୁଣ୍ଡାମାଳି, ଗଞ୍ଜାମ
ତା ୧୭।୮।୧୬

ଶ୍ରୀମାନ୍ ମହାରାଜା ଓ ପି, ଡଫ୍, ପାଟଣା
ତା ୨୦।୧୨।୧୬

ମହାଶୟ !

ଆପଣଙ୍କର ନିମନ୍ତ୍ରଣପତ୍ର ପାଇ ସାତିଶୟ ଆନନ୍ଦିତ ହେଲୁଁ । ମାତ୍ର ଦୁଃଖର ବିଷୟ ଏହି ଯେ ଆମ୍ଭେ ଉକ୍ତ ସମ୍ମିଳନୀ ମଣ୍ଡପରେ ନିରୂପିତ ସଭାସମାଜଙ୍କରେ ଉପସ୍ଥିତ ହୋଇ ଯୋଗଦାନ କରିପାରିବୁଁ ନାହିଁ । ଅତଏବ ଆପଣଙ୍କ ଜ୍ଞାତାର୍ଥେ ଲେଖିଲୁଁ । ଇତି ।

---

ମହାରାଜା ଓ ପି, ଡଫ୍, ସୋନପୁର
ତା ୨୪।୧୨।୧୬
Camp Subaliya

Dear Sir,

I am glad to acknawledge the receipt of your invitation letter to join Utkal Conference at Balasore on the 29th instant I regret I am nnable to attend as I am at present busy in declaring new settlement in these parts of my territory. I hope you will please communicate my absence to the members of the Conference.

---

ଯୁବରାଜ ସାହେବ ସୋନପୁର ଷ୍ଟେଟ୍,
Camp. Subaliya
The 24th Dec, 1916

Dear Sir,

Your invitation letter to join the Utkal oon-ference at Balasore on the 29th instant is to hand. I regret I am unable to attend as I am at present busy in settlement work in these parts of my territory.

---

ଶ୍ରୀଯୁକ୍ତ ଜଳନ୍ଧର ଦେବ—ବାମଣ୍ଡା
ତା ୨୩।୧୨।୧୭

ମହାଶୟ !

ଆପଣଙ୍କ ଦ୍ୱାରା ପ୍ରେରିତ ଉତ୍କଳ ସମ୍ମିଳନୀର ନିମନ୍ତ୍ରଣପତ୍ର ପାଇ ପରମ ଅହ୍ଲାଦିତ ହୋଇଅଛି । ନାନା ଅସୁବିଧା ଓ ପ୍ରତିବନ୍ଧକ ଯୋଗୁଁ ସମ୍ମିଳନୀରେ ଉପସ୍ଥିତ ହୋଇ ପାରିବାକୁ ମୋର ଯୋଗ୍ୟତା ନାହିଁ ।

ସମ୍ମିଳନୀ ଯେଉଁ ହିତକର କାର୍ଯ୍ୟ କରିବାକୁ ମନୋନୀତ କରିବେ ତହିଁରେ ମୋର ସମ୍ପୂର୍ଣ୍ଣ ସହାନୁଭୂତି ଥିବାର ଜ୍ଞାପନ କରୁଅଛି । ଦେଶହିତସାଧକ ଏପରି ସମ୍ମିଳନୀରେ ଯୋଗଦାନ ଦେବାକୁ ଅକ୍ଷମ ହେବାରୁ ନିତାନ୍ତ ଲଜ୍ଜିତ ଓ ଦୁଃଖିତ ଅଛି । ତ୍ରୁଟି ମାର୍ଜନା କରିବା ହେବେ । ଦେଶ ସମ୍ୟକ୍ ଉନ୍ନତି ଲାଭ କରୁ, ସମ୍ମିଳନୀର ମଙ୍ଗଳ ହେଉ, ଏହା ନିର୍ବିଘ୍ନରେ ସୁସମ୍ପନ୍ନ ହେଉ ଏହାହିଁ ଏକମାତ୍ର କାମନା ।

---

ରଜା କୃଃ ମଧୁପୁର
୨୮।୧୨।୧୭

ମହାଶୟ !

ନିତାନ୍ତ ଅତ୍ୟାବଶ୍ୟକୀୟ କାର୍ଯ୍ୟ ହେତୁ ଏବର୍ଷ ମାତୃସେବାରେ ଆପଣମାନଙ୍କ ସହିତ ଯୋଗ ଦେବାକୁ ଅକ୍ଷମ ହୋଇ ଯତ୍ପରୋନାସ୍ତି ଦୁଃଖିତ ହେଲି, ଆଶା କରେଁ ଈଶ୍ୱରକୃପାରୁ ସମ୍ମିଳନୀର ସମସ୍ତ କାର୍ଯ୍ୟ ସୁଚାରୁରୂପେ ସୁସମ୍ପନ୍ନ ହେବ । ଇତି

---

ଶ୍ରୀ ଧ୍ୟାନମହାପାତ୍ର ହେଃ ମାଷ୍ଟର ବଡ଼ଲଡା ।
୨୩।୧୨।୧୭

ମହାଶୟ !

ଅସ୍ମମାନଙ୍କର ସ୍କୁଲ୍ ବଡ଼ଦିନ ପର୍ବୋପଲକ୍ଷେ କେବଳ ଦୁଇଦିନ ବନ୍ଦ ଥିବାରୁ ଅସ୍ମେମାନେ ଆପଣଙ୍କର ଅନୁରୋଧାନୁସାରେ ସଭାରେ ଯୋଗଦାନ ଦେବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୋଇ ହୃଦୟର ଗଭୀର ଦୁଃଖ ପ୍ରକାଶ କରୁଅଛୁଁ । ସ୍କୁଲର କତିପୟ ଛାତ୍ର ଓ ଶିକ୍ଷକମାନେ ସମବେତ ହୋଇ ଟ ୫୲ ପାଞ୍ଚଟଙ୍କା ସାହାଯ୍ୟସ୍ୱରୂପ ଅଙ୍ଗୀକାର କରିଥିବାରୁ ଅଦ୍ୟ ଉକ୍ତ ଟଙ୍କା ପଠାଇଲି ।

---

ଶ୍ରୀ ନିତ୍ୟାନନ୍ଦ ପଟ୍ଟନାୟକ
ସ୍ୱତ୍ୱସଷେଶ୍ରେଷ୍ଠ ।
ପାରଲାଖେମୁଣ୍ଡି ରାଜବାଟୀ
୨୭।୧୨।୧୭

ଶ୍ରୀ ମନ୍ମହୋଦୟ !

ଶ୍ରୀ ମନ୍ମହାରାଜାଙ୍କ ଡକ୍ତୁଙ୍କ ଆଦେଶ ହୋଇ ଆପଣଙ୍କୁ ଜଣାଉଦେବାର ଏହି ଯେ, ସେ ବିଶେଷ କାର୍ଯ୍ୟରେ ବାଧ୍ୟ ହୋଇ ଇତମଧ୍ୟରେ ମାନ୍ଦ୍ରାଜ ଗମନ କରିବେ । ଅତଏବ ଆଗାମୀ ଉତ୍କଳସମ୍ମିଳନୀରେ ଯୋଗ ଦେଇ ନ ପାରିବେ ବୋଲି ସେ ଅତୀବ ଦୁଃଖିତ । ସମ୍ମିଳନୀର ଆଗାମୀ ଅଧିବେଶନରେ ସମାଲୋଚିତ ଓ ଗୃହୀତ ନିର୍ଦ୍ଧାରଣାବଳୀ ପ୍ରତି ତାହାଙ୍କର ସହାନୁଭୂତି ଅକ୍ଷୁଣ୍ଣ ରହିଅଛି । ସମ୍ମିଳନୀର ଆଗାମୀ ଅଧିବେଶନ ସୁସମ୍ପନ୍ନ ହେବବୋଲି ସେ ସମ୍ପୂର୍ଣ୍ଣ ଆଶା କରନ୍ତି ।

---

ଶ୍ରୀ ବନମାଳୀ ପଟ୍ଟନାୟକ
ବଲରାମପୁର, ଭଞ୍ଜନଗର ।
୨୭।୧୨।୧୭

ମହାଶୟ !

ଆସନ୍ତା ତା ୨୯।୩୦ ଦିନ ମାନଙ୍କରେ ଉତ୍କଳସମ୍ମିଳନୀରେ ଯୋଗ ଦେବା-ନିମନ୍ତେ ଆମନ୍ତ୍ରଣପତ୍ର ପ୍ରାପ୍ତ ହୋଇଅଛି । କିନ୍ତୁ ଦୁଃଖର ବିଷୟ ଏକମାସରୁ ଊର୍ଦ୍ଧ୍ୱ କାଶରୋଗରେ ପୀଡ଼ିତ ଥିବାରୁ ସମ୍ମିଳନୀରେ ଯୋଗଦାନ କରିବାକୁ ଅକ୍ଷମ ହୋଇ ଅତି ପରିତାପ ଜଣାଉଛି ।

---

ଶ୍ରୀ ବୃନ୍ଦାବନଚନ୍ଦ୍ର ରଥ
ହେଃ ପଣ୍ଡିତ ପର୍ଲାମୁଣ୍ଡି ଗୁରୁଟ୍ରେନିଂ ସ୍କୁଲ ।
୨୭।୧୨।୧୭

ଶ୍ରୀ ମନ୍ମହୋଦୟ !

ଏ ବର୍ଷ ବାଲେଶ୍ୱରଠାରେ ଉତ୍କଳସମ୍ମିଳନୀର ଦ୍ୱାଦଶ ଅଧିବେଶନରେ ଯୋଗ ଦେବାକୁ ଏକାନ୍ତ ଇଚ୍ଛା ଥିଲା । କିନ୍ତୁ ଶାରୀରିକ ଅସୁସ୍ଥତାବଶତଃ ସେ ଇଚ୍ଛା ଫଳବତୀ ହୋଇପାରିଲା ନାହିଁ । ଆଶା କରେଁ କ୍ଷମା ଦେବେ । ପ୍ରଭୁଙ୍କର ଆଶୀ-ର୍ବ୍ବାଦରୁ ମାତୃପୂଜା ସୁଚାରୁରୂପେ ସମ୍ପନ୍ନ ହେଉ ଏହା ମୋର ତାହାଙ୍କ ପାଦପଦ୍ମରେ ସତତ ପ୍ରାର୍ଥନା ।

---

ମାନ୍ୟବର ଶ୍ରୀଯୁକ୍ତ ଗଣେଶଲାଲ ପଣ୍ଡିତ
କଟକ
୨୭।୧୨।୧୬

ମହାଶୟ !

ଉତ୍କଳସମ୍ମିଳନୀର ଦ୍ୱାଦଶ ଅଧିବେଶନରେ ଯୋଗ ଦେବା ନିମନ୍ତେ ଅଭ୍ୟର୍ଥନାପତ୍ର ପାଇଅଛି । ଆନନ୍ଦର ସହିତ ଆପଣମାନଙ୍କ ସଙ୍ଗେ ଯୋଗ ଦେଇଥାନ୍ତି କିନ୍ତୁ ମୋହର ଶରୀର ଅସୁସ୍ଥତାହେତୁ ମୁଁ ଏତାଦୃଶ ପବିତ୍ର ଅନୁଷ୍ଠାନରେ ଯୋଗ ଦେବାକୁ ଅକ୍ଷମ ହେବାରୁ ବିଶେଷ ଦୁଃଖିତ ହେଲି । ଈଶ୍ୱରଙ୍କ ନିକଟ ଏକାନ୍ତ ପ୍ରାର୍ଥନା ଯେ, ସେ ଉକ୍ତ କାର୍ଯ୍ୟ ନିର୍ବିଘ୍ନରେ ସମ୍ପନ୍ନ କରନ୍ତୁ । ଆଶା କରେଁ ଆପଣମାନେ ମୋହର ତ୍ରୁଟି ମାର୍ଜନା କରିବେ ।

---

ଶ୍ରୀ ନୀଳମଣି ବିଦ୍ୟାରତ୍ନ
ବଡ଼କେମେଣ୍ଡି ।
୨୭।୧୨।୧୬

ସଶ୍ରଦ୍ଧ ନିବେଦନଂ

ମହାଶୟ !

ନିମନ୍ତ୍ରଣପତ୍ର ପାଇ ଆପଣଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛି ।

ଅନିବାର୍ଯ୍ୟ କାରଣବଶତଃ ସମ୍ମିଳନୀରେ ଯୋଗଦାନ କରି ନ ପାରିବାହେତୁ ବିଶେଷ ଦୁଃଖିତ । ସମ୍ମିଳନୀର ସଦୁଦ୍ଦେଶ୍ୟପ୍ରତି ମୋହର ସହାନୁଭୂତି ଅଛି । ମୁଁ ସଶରୀରରେ ସମ୍ମିଳନୀରେ ଯୋଗଦାନ କରି ନ ପାରିଲେ ମଧ୍ୟ ମୋର ମନ ସମ୍ମିଳନୀକ୍ଷେତ୍ରରେ ।

ଅନୁପସ୍ଥିତି ଅପରାଧ କ୍ଷମା କରିବା ହେବେ ।

---

ସରଭପାଢ଼ ।
୨୪।୧୨।୧୬

ଅଭ୍ୟର୍ଥନା ସମିତିର ସଭାପତି ମହାଶୟ !

ଆପଣଙ୍କର ନିମନ୍ତ୍ରଣ "ଆଶା" ସମ୍ବାଦ ପତ୍ରିକାଯୋଗେ ପ୍ରାପ୍ତ ହୋଇ ନିମ୍ନାଙ୍କିତ ଉତ୍କଳଭ୍ରାତୃବୃନ୍ଦ ଯତ୍ପରୋନାସ୍ତି ପ୍ରୀତ ହେଲୁଁ । ଆମ୍ଭମାନଙ୍କ ଅନ୍ତଃକରଣରେ ଏହି ଆଶା ବଳବତୀ ଥିଲା କି ଏହିପରି ସୁଯୋଗରେ ଥରେ ଜାତୀୟ

ମହାସମ୍ମିଳନୀ ପରିଦର୍ଶନ କରି ସ୍ବ ୨ ଜୀବନକୁ ଚରିତାର୍ଥ କରିବୁଁ । ମାତ୍ର ଉକ୍ତ କ୍ଷଣ ମନକୁ ସର୍ବଦା ବାଲେଶ୍ବର ଅଡ଼କୁ ପ୍ରଧାବିତ କରାଇ ହେଲେହେଁ ପରାଧୀନତା ବଳ ଅତିକଷ୍ଟହେତୁ ତାହା କାର୍ଯ୍ୟରେ ପରିଣତ ହୋଇ ପାରିବାକୁ ନାହିଁ । ବର୍ତ୍ତମାନ ସାଲତମାମି କାର୍ଯ୍ୟ ଆରମ୍ଭ । ୨ସ୍ବରେ ମାଜିଷ୍ଟ୍ର କଲି ସାହେବ ବାହାଦୁରଙ୍କର ଶୁଭାଗମନ । ଏହି ଉପସ୍ଥିତ ବାଧା ହେତୁ ଅମ୍ଭମାନଙ୍କର ଇଚ୍ଛା ଥିଲେ ମଧ୍ୟ ଅବସର ନେଇ ଯିବାକୁ ନିତାନ୍ତ ଅସମର୍ଥ । ଉତ୍କଳଜାତୀୟ ସମ୍ମିଳନୀରେ ଯୋଗ ଦେଇ ପାରିଥିଲେ ଅମ୍ଭମାନଙ୍କର ଓ ଏତାଦୃଶ ଉତ୍କଳଦ୍ବାର ପ୍ରଜାପୁଞ୍ଜଙ୍କର ଦୁର୍ଦ୍ଦଶା ବ୍ୟକ୍ତ କରିଥାନ୍ତୁ । ମାତ୍ର କଣ କରାଯାଏ ଏହା ଅମ୍ଭର ଦୁର୍ଭାଗ୍ୟ ବୋଲିବାକୁ ହେବ । ଯାହାହେଉ ଅମ୍ଭେମାନେ ଏହି ଲିପିଦ୍ବାରା ନିବେଦନ କରୁଅଛୁଁ ଯେ ଆପଣମାନେ ଅମ୍ଭମାନଙ୍କ ଦୁରବସ୍ଥାପ୍ରତି ସୁଦୃଷ୍ଟି ପ୍ରକାଶ କରିବା ହେବେ ।

ଆପଣଙ୍କର ବଶମ୍ବଦ

| | |
|---|---|
| ଶ୍ରୀ ମଦନମୋହନ ପାଣିଗ୍ରାହୀ | ହେଡ୍‌କ୍ଲାର୍କ ପୁଲିସର |
| ,, ଭଗୀରଥୀ ପଧାନ | ଟାଇପିଷ୍ଟ । |
| ,, ଜଗବନ୍ଧୁ କାନୁନଗୋ | ମହୋରର । |
| ,, ଜଗନ୍ନାଥ କାନୁନଗୋ | ଫାର୍ମ ମହୋରର । |
| ,, ଗୋପବନ୍ଧୁ ପୃଷ୍ଟି | ଟ୍ରେଜେରର |
| ,, ସାଉଟିଚନ୍ଦ୍ର ସଉଦ | ନାଜର |
| ,, ଦୟାନିଧି ଗୌନ୍ତ୍ୟା | ରୋଶଣୀ |
| ,, ଧନୁର୍ଦ୍ଧର ଗୌନ୍ତ୍ୟା | ଲୁବେଷ୍ଟିହ |
| ,, ଭୁବନେଶ୍ବର ଗୌନ୍ତ୍ୟା | ବାଇସି |
| ,, ଭୁବନେଶ୍ବର ଗୌନ୍ତ୍ୟା | ସଲଦାର |
| ,, ଭାନୁପ୍ରତାପ ତିଆରି | ପେଷ୍କାର |
| ,, ତ୍ରିଲୋଚନ ପତି | ବେଲେଣ୍ଡ୍ରା |
| ,, ଭୋଜରାଜ ସିଂହ | ଗଡ଼ଖାସ୍ତ—ବଲେଡା |
| ,, ମାଧବ ମହାନ୍ତି | ସରଉପାଳ |
| ,, ଦିବ୍ୟସିନୁ ଗୌନ୍ତ୍ୟା | ଛେଲମିଲ୍ଲ |
| ,, ରାମସେବ ସିଂହ ଗୌନ୍ତ୍ୟା | ଗଡ଼ ପୁଲିସର |
| ଶ୍ରୀ ମନବୋଧ ଗୌନ୍ତ୍ୟା | ବେଲଟିବର |

ଶ୍ରୀ ଗୋବିନ୍ଦଚନ୍ଦ୍ର ପୃଷ୍ଟି
କଡ଼ିଦାର, ବକ୍ସିବଜାର, କଟକ
ତା ୨୬ । ୧୨ । ୧୬

ମହାଶୟ !

ଉତ୍କଳସମ୍ମିଳନୀର ଆମନ୍ତ୍ରଣରୁ ଆମ୍ଭେ ଯୋଗ ଦେଇଆସୁଅଛୁଁ । କିନ୍ତୁ ଦୁଃଖର ବିଷୟ ଏବର୍ଷ କୌଣସି ବିଶେଷ ଅସୁବିଧାଯୋଗୁଁ ଓ ନିଜର ଶରୀର ଅସୁସ୍ଥତା-ଯୋଗୁ ଏ ବର୍ଷର ଉକ୍ତ ପବିତ୍ର ଅନୁଷ୍ଠାନରେ ଯୋଗ ଦେବାକାରଣ ଅପାରଗ ହେଲି । ଅତଏବ ସବିନୟ ନିବେଦନ ଏହି ଯେ ଆପଣ ଅନୁଗ୍ରହପୂର୍ବକ ତ୍ରୁଟି ମାର୍ଜନା କରି ମୋହର ସମ୍ପୂର୍ଣ୍ଣ ସହାନୁଭୂତି ପ୍ରକାଶ କରିବେ ।

---

କବି ଶ୍ରୀ ଚିନ୍ତାମଣି ମହାନ୍ତି
ଇଚ୍ଛାପୁର ଗଞ୍ଜାମ ।
ତା ୨୮ । ୧୨ । ୧୬

ସମ୍ପାଦକ ମହୋଦୟ !

ମାତୃପୂଜାର ଆହ୍ୱାନପତ୍ର ପାଇଥିଲି । ମାତ୍ର ଶୀତ ଦେଖି ସେ ପବିତ୍ର-ପୂଜାରେ ଯୋଗ ଦେବାକୁ ଅକ୍ଷମ ହୋଇ ନିଜର ଦୁର୍ଭାଗ୍ୟକୁ ଧିକ୍କାର କରୁଅଛି ।

ଯାହାହେଉ ଦୈବକାରଣବଶତଃ ଉପସ୍ଥିତ ହୋଇ ନ ପାରିଲେ ସୁଦ୍ଧା ସମ୍ମିଳନୀପ୍ରତି ମୋହର ଭକ୍ତି ସହାନୁଭୂତି ଅକ୍ଷୁଣ୍ଣ ଅଛି ଏବଂ ମୁଁ ନିଜକୁ ମାତୃ-ପୂଜାପୀଠରେ ଉପସ୍ଥିତ ଥିଲା ପରି ମଣୁଅଛି ।

---

ଶ୍ରୀ ବୃନ୍ଦାବନନାଥ ଶର୍ମା
ଦେବଗଡ଼ ବାମଣ୍ଡା ।
ତା ୨୬ । ୧୨ । ୧୯୧୬

ଶ୍ରୀମନ୍ମହୋଦୟ !

ଓଡ଼ିଆଜାତିର ମହାମିଳନ କ୍ଷେତ୍ର ସମ୍ମିଳନୀ ମଣ୍ଡପରେ ଉପସ୍ଥିତ ହେବା-ନିମନ୍ତେ ଭବଦୀୟ ନିମନ୍ତ୍ରଣପତ୍ର ଯଥାସମୟରେ ପ୍ରାପ୍ତ ହୋଇ କୃତଜ୍ଞତା ସ୍ୱୀକାର କରୁଅଛି ।

ଏହି ପବିତ୍ର ଅନୁଷ୍ଠାନରେ ନାନା ଅସୁବିଧାପ୍ରଯୁକ୍ତ ଉପସ୍ଥିତ ହୋଇ ନ ପାରି ମର୍ମାନ୍ତିକ ଦୁଃଖ ଅନୁଭବ କରୁଅଛି । ପରମେଶ୍ୱରଙ୍କ ନିକଟରେ ସାନୁନୟ ପ୍ରାର୍ଥନା କରେଁ ସମ୍ମିଳନୀ ନିଜର ଉଦ୍ଦେଶ୍ୟ ସାଧନ କରି ସମଗ୍ର ଓଡ଼ିଆଜାତିର ମହୋପକାର ସାଧନ କରୁ ।

---

ଶ୍ରୀ କରୁଣାକର ସାହୁ,
ଦେବଗଡ଼ ବାମଣ୍ଡା
ତା ୨୭ । ୧୨ । ୧୭

ଶ୍ରୀ ମନ୍ତ୍ରୀ ମହୋଦୟ !

ଉତ୍କଳସମ୍ମିଳନୀ ମଣ୍ଡପରେ ଉପସ୍ଥିତ ହେବା ନିମନ୍ତେ ଭବଦୀୟଙ୍କ ନିମନ୍ତ୍ରଣ-ପତ୍ର ପ୍ରାପ୍ତ ହୋଇ କୃତଜ୍ଞତା ସ୍ୱୀକାର କରୁଅଛି । ନାନା ଅସୁବିଧା ବଶତଃ ସମ୍ମିଳନୀରେ ଉପସ୍ଥିତ ହୋଇ ନ ପାରି ଦୁଃଖିତ ହୋଇଅଛି । ମଙ୍ଗଳମୟ ଭଗବାନଙ୍କ ନିକଟରେ ସବିନୟ ପ୍ରାର୍ଥନା କରେ ସମ୍ମିଳନୀ ଉଦ୍ଦେଶ୍ୟ ସାଧନକର ସମସ୍ତ ଉତ୍କଳଗ୍ରଣୀ ଓ ଉତ୍କଳବାସୀଙ୍କର ମହୋପକାର ସାଧନ କରୁ ଏହି ମାତ୍ର କାମନା ।

ଏହି ନିବେଦନ ପତ୍ରଦ୍ୱାରା ସହାନୁଭୂତି ଜଣାଇ ବିଦାୟ ହେଲି ଇତି ।

---

ଶ୍ରୀ କୃତ୍ୟାନନ୍ଦ ପଟ୍ଟନାୟକ
ପାରଳାଖେମଣ୍ଡି ।

Dear Sir,

I wish I could attend the Conference at Balasore. But to my pro foundest regret I can not do so for several good reasons. I hope and pray the Almighty that the coming session of the Conference would be a signal success.

---

ଶ୍ରୀ ପଦ୍ମଚରଣ କବିରତ୍ନ, ଶର୍ମା
ସମ୍ପାଦକ ଭୁବନେଶ୍ୱର ପାଠାଗାର
ହିଞ୍ଜିଳି, ଗଞ୍ଜାମ ।

ଶ୍ରୀମନ୍ତ୍ରୀମହୋଦୟ !

ଅମ୍ଭମାନଙ୍କର ଉତ୍କଳସମ୍ମିଳନୀମଣ୍ଡପରେ ଯୋଗଦେବାରେ ମୋର ଏକାନ୍ତ ପିପାସା ଥିଲେହେଁ ମୁଁ ଶାରୀରିକ ଅସ୍ୱାସ୍ଥ୍ୟଯୋଗୁଁ ମାତୃପୂଜାରେ ଅନୁପସ୍ଥିତ । ଅତଏବ ଆପଣମାନଙ୍କ ନିକଟ ଏହି ପତ୍ର ପ୍ରେରଣ କରିବାରେ ପ୍ରବୃତ୍ତ ହୋଇ କୃତାଞ୍ଜଳିପୁଟରେ ନିବେଦନ କରେଁ ମୋର ସମ୍ମିଳନୀ ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ଅଛି ।

---

ଶ୍ରୀ ରାଧାନାଥ ପଣ୍ଡା ବି,ଏଲ୍,
ମେଦନୀପୁର ।

My dear Sir,

I am glad to hand your reminder inviting me to attend the Conference. A. P. C. was already sent to me by the Secretary.

As my eldest son is seriously ill I am incapable to go out during the holidays but I have asked some of my acquiantances invited to attend Conference.

I therefore hope you will kindly excuse my non attendance for which I am very sorry

Thanking you Sir
I remain yours

---

Babu Madanji
Secretary
Behar Students
Central Association
Bankipur,
27-12-16.

Dear Sir,

Many thanks for your kind invitation through Babu Rajendra Prosad M. A. B. L. to attend your Conference, owing to the dates being rather inconvenient for us for you know the list examinations and Law examinations are held just after the Christmas vacation. Rest assured how ever, that if you fix convenient dates next time of during the Maharam vacation we shall try our best to make it a point to attend your Conference.

I need hardly assure you of our sincere and brotherly affiction for the welfair of your Conference and on behalf of my association and thus of the whole student Community of Bihar wish your Conference an un qualified success and long life

S. N. Basu
Tealher B. N. Ry
Indian School—Kharagpur
26th Dec, 1916
Reporter of Associated Press India

Dear Sir,

Allow me to introduce myself to you before my interview with you at your Conference

I may be permitted to claim myself a Domiciled Bengali being a resident of the District of Balasore.

I was formerly Head Master of the Bettiah Raj school ( Behar ) At present I am Asst. Head Master of the **B. N. R. H. E.** school at Kharagpur and a daily passenger from Midnapur. I devote myself to English, Bengali, Uriya and Hindi literature though upto date I have not, I must confess, written a single live in Uriya. I am also an Associated Press Reporter of Midnapur as well as of Kharagpur. I am also an "Own correspondent of the A. B. Patrika from Midnapur and Kharagpur, I belong to the editing Board of the Vernacular weekly Medini Bandhab too. I am a member in the Executive Committee of the Bangiya Sahitya Barishal—of the Midnapur branch.

All along I had a strong desire to visit Utkal Conference but my presence as a delegate to other Conferences in Bengal did not permit me to do so. I was thinking of going to Balasore this year though I had been meant for Bankipur when the opportunity presented itself. I have been asked by the Press to report your Conference beth the days I shall start for Balasore to-morrow by the Puri Express train after finishing here the "All Bengal Muktar's Conference" to-morrow evening.

I shall be much obliged if you kindly help me with all press facilities. I have also written a letter to Mr. B. N. Misra.

It also affords me an immense pleasure for the interest four mother province, to lay down certain proposals before the Conference through you by demanding the privilege of your kindness.

---

ଶ୍ରୀ ଦିବ୍ୟସିଂହ ମିଶ୍ର ବି, ଏ,
ହେଡ଼ ମାଃ ସମ୍ବଲପୁର ଜିଲାସ୍କୁଲ
ତା ୨୭।୧୨।୧୭

Regret absence wish.Conference every success.

---

ଶ୍ରୀ ଭାଗ୍ୟଚନ୍ଦ୍ର ମିଶ୍ର
ଡେପୁଟି ଇନ୍‌ସ୍‌ପେକ୍ଟର
ସ୍କୁଲ ବଲାଙ୍ଗିର ।

ମହାଶୟ !

ଆମ୍ଭମାନଙ୍କର ପବିତ୍ର ଅନୁଷ୍ଠାନ ଉତ୍କଳସମ୍ମିଳନୀରେ ଯୋଗଦାନ କରିବାକୁ ଆପଣଙ୍କର ନିମନ୍ତ୍ରଣପତ୍ର ପାଇଅଛୁ । କିନ୍ତୁ ନିତାନ୍ତ ଆବଶ୍ୟକୀୟ କାର୍ଯ୍ୟବଶରୁ ସମ୍ମିଳନୀରେ ଯୋଗଦେବା ନିମନ୍ତେ ମୁଁ ଅକ୍ଷମ ଅଟେ । ତେଣୁକରି ଅନୁରୋଧ କରୁଅଛୁ ଯେ ମୋତେ ସମ୍ମିଳନୀ ଏଥିପାଇଁ କ୍ଷମା କରିବେ । ସମ୍ମିଳନୀର କାର୍ଯ୍ୟ ପ୍ରତି ମୋହର ସମ୍ପୂର୍ଣ୍ଣ ସହାନୁଭୂତି ଅଛି ।

---

ପଣ୍ଡିତ ଶ୍ରୀ ଫାଗୁଣି ମିଶ୍ର ଶର୍ମା
ଗଡ଼କବସ୍ତି, ପୁରୀ ।
୨୭।୧୨।୧୭

ମହୋଦୟ !

ଆପଣଙ୍କ ନିମନ୍ତ୍ରଣପତ୍ର ଯଥାସମୟରେ ହସ୍ତଗତ ହୋଇଅଛି । ମୋର ଶାରୀରିକ ଅସୁସ୍ଥତାଯୋଗୁ ମାତୃପୂଜା ଉତ୍ସବରେ ଯୋଗଦାନ କରି ନ ପାରି ମୁଁ ଏବଂ ଜ୍ଞାନାଭିବର୍ଦ୍ଧିନୀ ସମାଜର ଅନ୍ୟ ସଭ୍ୟମାନେ ନିଜ ନିଜ ଜୀବନକୁ ଧିକ୍କାର ଦେଉଁ ; ମୋର ଏବଂ ସମାଜର ଅନ୍ୟ ସଭ୍ୟମାନଙ୍କର ପୂର୍ଣ୍ଣ ସହାନୁଭୂତି ଉତ୍ତରର ସହିତ ପ୍ରକାଶ କରୁଅଛୁଁ ।

---

ମହାମାନ୍ୟ ପୂଜନୀୟ ଶ୍ରୀଲ ଶ୍ରୀଯୁକ୍ତ ଉତ୍କଳସମ୍ମିଳନୀର ଦ୍ୱାଦଶ ବାର୍ଷିକ ଅଧିବେଶନର ସଭାପତି ମଣ୍ଡ଼ୁଶାଭ ଶ୍ରୀମାନ୍ ରଜାମହୋଦୟ ମହାମହିମାସ୍ପଦେଷୁ— ମହାଭାଗ !

ଅସ୍ମମାନଙ୍କର ଜୟପୁର ଶାଖା ଉତ୍କଳସମିତିର ସ୍ଥାପନ ଅବଧି ପ୍ରାୟ ଅଠମାସ ହେବ । ଏହି ଅତ୍ୟଳ୍ପ ସମୟ ମଧ୍ୟରେ ଉକ୍ତ ସମିତି ଏହାର ସାଧ୍ୟାଣ କାର୍ଯ୍ୟ କରି ଆସିଥିଲେ ଏବଂ କରୁଥିଲେ ମଧ୍ୟ ଏପରି ଉଲ୍ଲେଖଯୋଗ୍ୟ କୌଣସି କାର୍ଯ୍ୟ କରିନାହିଁ ଯାହା ଶ୍ରୀଚରଣରେ ଅସ୍ମମାନେ ନିବେଦନ କରି ଅପଣାଙ୍କୁ କୃତ-କୃତାର୍ଥ ମନେ କରିବୁଁ । ମାତ୍ର ଭଗବାନଙ୍କ ଅପାର କରୁଣା ଏହି ଯେ ଜୟପୁର ଭଳି ଅନୁନ୍ନତ ମାଳ ପ୍ରଦେଶରେ ଏପରି ଗୋଟିଏ ଉତ୍କଳସମିତି ସ୍ଥାପନ କରାଇ ଉତ୍କଳ ଭ୍ରାତାମାନଙ୍କର ପାରସ୍ପରିକ ମନୋଭାବ ଏବଂ ଲକ୍ଷ୍ୟ ଏହି ଦିଗକୁ ଆକର୍ଷଣ କରାଇ ଅଛନ୍ତି ଅତୀବ ସୁଖର ବିଷୟ ।

କତିପୟ ମାସ ପୂର୍ବେ ଅସ୍ମେମାନେ ଅତ୍ରତ୍ୟ ଉତ୍କଳୀୟ ସଭ୍ୟମଣ୍ଡଳୀ ଆଶା ପୋଷଣ କରିଥିଲୁଁ ଯେ ଅସ୍ମମାନଙ୍କ ମଧ୍ୟରୁ କେତେକଜଣ ଭ୍ରାତାଙ୍କୁ ଉତ୍କଳସମ୍ମିଳନୀର ବାର୍ଷିକ ଅଧିବେଶନକୁ ପ୍ରେରଣ କରି ଜୟପୁର ଓଡ଼ିଆମାନଙ୍କର ଯାବତୀୟ ଦୁର୍ଦ୍ଦଶା ଶ୍ରୀଚରଣରେ ଏବଂ ସମ୍ମିଳନୀରେ ନିବେଦନ କରି ଏହାର କୌଣସି ପ୍ରତିକାରର ଉତ୍କୃଷ୍ଟ ବ୍ୟବସ୍ଥା କରାଇ ପାରିବୁଁ । ମାତ୍ର ଭଗବାନଙ୍କର ଇଚ୍ଛା ଅନ୍ୟରୂପ । କାରଣ ଅସ୍ମମାନଙ୍କର ଉତ୍କଳସମିତିର ଆର୍ଥିକ ଅବସ୍ଥା ଅତୀବ ମନ୍ଦ ଯୋଗୁଁ ଅସ୍ମେମାନେ କେହି ଏ ମହତ୍ ଶୁଭାନୁଷ୍ଠାନରେ ଯୋଗଦାନ କରି ନ ପାରି ଯେ କେତେଦୂର ମର୍ମାହତ ଓ ଦୁଃଖିତ ହୋଇଅଛୁଁ ଓ ହେଉଅଛୁଁ ତାହା ସେହି ସର୍ବନିୟନ୍ତା ପରମପୁରୁଷ ପରମେଶ୍ୱରଙ୍କ ଛଡ଼ା ଅନ୍ୟ କାହାକୁ ବିଦିତ ନୁହେଁ । କିନ୍ତୁ ଚଳିତବର୍ଷର ମହା ଉତ୍କଳସମ୍ମିଳନୀର ସର୍ବାଙ୍ଗୀଣ ଉନ୍ନତି ଯଶ ଓ ଜୟ ନିମନ୍ତେ ଏହି ସ୍ଥାନରେ ପ୍ରସିଦ୍ଧ ଶିବଲିଙ୍ଗ ଶ୍ରୀ ନୀଳକଣ୍ଠେଶ୍ୱର ମହାଦେବଙ୍କ ନିକଟରେ ଉତ୍କଳସମ୍ମିଳନୀର ଦିବସ ଦ୍ୱୟ ଅର୍ଥାତ୍ ଚଳିତ ଡିସେମ୍ବରମାସ ତା ୨୯।୩୦ ଲଗ ଦିନ ଶର୍ବାର୍ଚ୍ଚିତ ଜଳଶାୟୀ, ତ୍ରାତ୍ୟହ୍ନ ଏକଶତ ଅଷ୍ଟ ବିଲ୍ୱପତ୍ର ପ୍ରଦାନ ଏବଂ ରୁଦ୍ରାଭିଷେକ ପ୍ରଭୃତି ମଙ୍ଗଳଜନକ ସେବାଦିର ଅନୁଷ୍ଠାନ କରିବାର ସଙ୍କଳ୍ପ କରିଅଛୁଁ ଏବଂ ଏହା ନିଶ୍ଚୟ କାର୍ଯ୍ୟରେ ପରିଣତ କରିବୁଁ ।

ଅସ୍ମମାନଙ୍କର ଉତ୍କଳସମିତିର ସଭ୍ୟଗଣ ମହା ଉତ୍କଳସମ୍ମିଳନୀର ସଭାପତି ଏବଂ ସଭ୍ୟ ମହାଶୟ ଗଣଙ୍କର ଉତ୍ତରୋତ୍ତର ଯଶବୃଦ୍ଧି ଏବଂ ଶ୍ରୀ ସମ୍ପାଦନ ନିମିତ୍ତ

ଦୟାମୟ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଅଛନ୍ତି ଏବଂ ଏହପରି ଚିରକାଳ କରୁଥିବେ । ଆମ୍ଭମାନଙ୍କର ପ୍ରାର୍ଥନା ପୂର୍ବରୁ ଆମ୍ଭମାନଙ୍କର ଉତ୍କଳସମ୍ମିଳନୀର ଭ୍ରାତୃଗଣ ଜୟପୁର ରାଜ୍ୟକୁ ଗୋଟିଏ ସ୍ୱତନ୍ତ୍ର ଉତ୍କଳୀୟ କକ୍ଷରୂପେ ଗଠନକରିବା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କୁ ଯେଉଁ ପ୍ରସ୍ତାବ ପ୍ରେରଣ କରିବାର ପ୍ରସ୍ତାବନା କରିଅଛନ୍ତି ସେଥିନିମନ୍ତେ ଜୟପୁର ଓଡ଼ିଆମାନେ ଚିରକାଳ ନିମନ୍ତେ ସମ୍ମିଳନୀର ଭ୍ରାତୃବୃନ୍ଦଙ୍କ ନିକଟରେ ଋଣୀ ଓ କୃତଜ୍ଞ ଥିବେ ଏବଂ ଅଛନ୍ତି ଏଥିରେ ଅଣୁମାତ୍ର ସନ୍ଦେହନାହିଁ । ଉକ୍ତ୍ୟ ଉତ୍କଳସମିତିର କୌଣସି ସଭ୍ୟ ମହା ଉତ୍କଳସମ୍ମିଳନୀରେ ଯୋଗଦାନ ନ କଲେ ମଧ ଜୟପୁର ଉତ୍କଳୀୟ ମାନଙ୍କର ଦୁର୍ଦ୍ଦଶା ଅପନୋଦନ ନିମନ୍ତେ ଯେ ମହା ଉତ୍କଳସମ୍ମିଳନୀ ସର୍ବଦା-ଯତ୍ନବାନ ଏହା କାର୍ଯ୍ୟରେ ପରିଣତ କରିବେ ଏହା ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ।

ପରିଶେଷରେ ଶ୍ରୀଯୁକ୍ତେ ଏବଂ ମହାଉତ୍କଳସମ୍ମିଳନୀରେ ସଭ୍ୟ ମହୋଦୟମାନଙ୍କ ନିକଟରେ କୃତାଞ୍ଜଳିପୁଟରେ ନିବେଦନ ଏହି ଯେ ଆମ୍ଭମାନଙ୍କର ମହାସମ୍ମିଳନୀରେ ଅନୁପସ୍ଥିତ ଜନିତ ଦୋଷ ମାର୍ଜନାକରି ଆମ୍ଭମାନଙ୍କୁ ଚିର କୃତଜ୍ଞତା ପାଶରେ ଆବଦ୍ଧକରିବା ହେବେ । ନିବେଦନ ଇତି ।

ଉତ୍କଳସମାଜ ଅଫିସ
ଜୟପୁର
ତା ୨୩।୧୨।୧୬

ଶ୍ରୀଯୁକ୍ତ ଡାକ୍ତର ବୃନ୍ଦାବନଚ ଉଡ୍ୟ
ଶ୍ରୀ ଗୌରଚନ୍ଦ୍ର ସାମନ୍ତରାୟ
ପଞ୍ଚମ ଉତ୍କଳ ଶାଖାସମିତିର ଜୟପୁର ଶାଖାର ସମ୍ପାଦକ ।
ସମସ୍ତ ଜୟପୁର ଉତ୍କଳୀୟମାନଙ୍କ ପକ୍ଷରୁ ।

---

Sankar Misra
Teacher, Khalikote
28-12-16

Dear Sir,

Sorry to say that owing to danger at home I am quite unable to attend the Conference this year.

With sincere prayer to Heaven I wish the Conference through success and give thanks from the core of my heart to the Executive Members of this great Utkal assembly.

---

ଶ୍ରୀ କାଶୀନାଥ ମହାପାତ୍ର
ଗୃହିଁବସା କନ୍ୟା ସ୍କୁଲ
ତା ୨୭।୧୨।୧୨

ଶ୍ରୀମନ୍ମହୋଦୟ !

ଉତ୍କଳସମ୍ମିଳନୀର ଦ୍ୱାଦଶ ଅଧିବେଶନରେ ଯୋଗଦାନପୂର୍ବକ ମାତୃପୂଜା କରିବାକୁ ଆପଣଙ୍କର ଗତ ତା ୧୦।୧୨।୧୨ ରିଖ ମୁଦ୍ରିତ ନିମନ୍ତ୍ରଣ କାର୍ଡ଼ ଗତ ତା ୧୫ ରିଖରେ ପ୍ରାପ୍ତହୋଇ ଆନ୍ତରିକ କୃତଜ୍ଞତା ସହିତ ନିବେଦନ କରୁଅଛି ଯେ ସାନନ୍ଦରେ ଯିବାପାଇଁ ଆୟୋଜନ କରି ରଖିଥିଲି । କିନ୍ତୁ ଦୈବଦୁର୍ବିପାକରେ ଗତ କାଲିଠାରୁ ଜ୍ୱରରୋଗରେ ପ୍ରପୀଡ଼ିତ ହେବାରୁ ପ୍ରାଣପ୍ରିୟ ଉତ୍କଳର ଏକତ୍ରିତ ଭ୍ରାତାମାନଙ୍କ ସହିତ ମାତୃପୂଜାରୁ ବଞ୍ଚିତହୋଇ ରୋଗାଧିକରୁ ଅତ୍ୟନ୍ତ ମର୍ମାହତ କ୍ଲେଶ ଅନୁଭବ କରୁଅଛି । ମଜ ମୋର ଜଡ଼ଶରୀର ଏଠାରେ ରୋଗଶଯ୍ୟାଗତ । କିନ୍ତୁ ମନ କଳ୍ପନାରାଜ୍ୟରେ ସେଠାରେ ବିଚରଣ କରି ଆପଣମାନଙ୍କ ସହିତ ମାତୃ-ପୂଜା ଯଜ୍ଞରେ ବ୍ୟାପୃତ ରହିଅଛି । ଯାହାହେଉ ଈଶ୍ୱର ସମସ୍ତ କାର୍ଯ୍ୟ ନିର୍ବିଘ୍ନରେ ନିର୍ବାହିତ କରନ୍ତୁ ଏହାହିଁ ତାଙ୍କ ପାଦପଦ୍ମରେ ସତତ ପ୍ରାର୍ଥନା କରେଁ । ମୋର ଏହି ଅନିବାର୍ଯ୍ୟ କାରଣବଶତଃ ଉକ୍ତ ଯଜ୍ଞକ୍ଷେତ୍ରରେ ଅନୁପସ୍ଥିତିଜନିତ ଦୋଷରୁ ମୁକ୍ତିଦେବା ନିମନ୍ତେ ସମ୍ମିଳନୀମଣ୍ଡପରେ ଏକତ୍ରିତ ଭ୍ରାତାମାନଙ୍କଠାରେ ଏବଂ ଆପଣଙ୍କ ନିକଟରେ ବିନୀତ ପ୍ରାର୍ଥନା କରୁଅଛି ।

---

ଶ୍ରୀ ଜୟମଙ୍ଗଳ ରଥ
ପାରଳାଖେମଣ୍ଡି
ତା ୨୨।୧୨।୧୨

ଶ୍ରୀମନ୍ମହୋଦୟ !

ଯଥାସମୟରେ ଆପଣଙ୍କ ନିମନ୍ତ୍ରଣ କାର୍ଡ଼ ପାଇ ମୁଁ କୃତାର୍ଥ ହୋଇଅଛି । ମୋର ସମ୍ମିଳନୀପ୍ରତି ପ୍ରଗାଢ଼ ଭକ୍ତି ଓ ଶ୍ରଦ୍ଧା ଥିଲେସୁଦ୍ଧା ଏ ବର୍ଷ ବିଶେଷ କାରଣ ବଶତଃ ସେହି ମାତୃପୂଜା-ପବିତ୍ରଅନୁଷ୍ଠାନରେ ଯୋଗଦେଇ ନ ପାରି ମର୍ମାନ୍ତିକ ବେଦନା ଅନୁଭବ କରୁଅଛି । ତଥାପି ମୁଁ ଏଠାରେ ଥାଇ ବାଲେଶ୍ୱର ଅଧିବେଶନ ପ୍ରତି ବିଶେଷ ସହାନୁଭୂତି ରଖେ ଏବଂ କେତେଖଣ୍ଡ ପତ୍ରୀରୁ ସେଥିପାଇଁ ସହାନୁଭୂତି ଯିବା ଚେଷ୍ଟାରେ ଚେଷ୍ଟିତ । ଆଶାକରେଁ ବିଶେଷ କାରଣ ଦୃଷ୍ଟିରେ ଆପଣ ମୋର ଅନୁପସ୍ଥିତିକୁ କ୍ଷମାଦେବେ ।

---

ଶ୍ରୀ ଭଗୀରଥି ପଦ୍ୟାଳଙ୍କାର
ସେକ୍ରେଟେରୀ ଗଡ଼ଜାତବାସିନୀ
ତାଳଚେର ।
ତା ୨୭।୧୨।୧୬

ଭକ୍ତିଭାଜନ ମହୋଦୟ !

ଦୁର୍ଦ୍ଦମନୀୟ ପ୍ରତିବନ୍ଧକବଶତଃ ସମ୍ମିଳନୀରେ ଯୋଗଦେଇ ନ ପାରି ସହାନୁଭୂତି ନିବେଦନ କରୁଅଛି । କ୍ଷମା ଦେବା ହେବେ ।

---

ଶ୍ରୀ ରାଧାଶ୍ୟାମ ମଙ୍ଗରାଜ ମାନଧାତା ମହାପାତ୍ର
ତା ୩୧।୮।୧୬

ମହାଶୟ !

ଉତ୍କଳସମ୍ମିଳନୀସମିତିରେ ଉପସ୍ଥିତ ହେବା ନିମନ୍ତେ ଆପଣଙ୍କର ଅର୍ଚ୍ଚନା ପତ୍ର ପାଇ ବିଶେଷ ଆନନ୍ଦିତ ହେଲି । ବର୍ତ୍ତମାନ ମୋର ଦେହ ଜ୍ୱରରେ ପୀଡ଼ିତ ଥିବାହେତୁ ଉକ୍ତ ସମିତିରେ ଉପସ୍ଥିତ ହୋଇ ନ ପାରି ପଦ-ହ୍ୱାସ ଜଣାଉଛି ।

---

Krishna Chandra Palit
Cuttack
28-12-16

Dear Sir,

I am very much sorry to inform you that owing to excussive inflamation of arm and tooth-act for the last 5 days I am quite unable to leave home. So you will kindly excuse me. Kindly send me programme and list of works done in the Conference.

---

Balunkeswar Misra B. L.
Bargarh
29-12-16

Regret inability attending have full sympathy.

---

Hemendra Chandra Mandal
Chinsura
28-12-16

I am in receipt of your letters and I am sorry I am suffering from dysentry and fever and was almost bed-ridden. You can use my dwelling house leaving my bedroom and baithaikkhana for my use and ask Huria and my cook to open my other rooms for the members of the Utkal Conference. Hoping your Conference a success.

---

ଶ୍ରୀ ବିଶ୍ୱନାଥ ଦେବବର୍ମା
ଶ୍ରୀ ରାଜାବାହାଦୁର
ଜା: ଅଠଗଡ଼ ।
ଅଷ୍ଟଦୁର୍ଗ ରାଜଧାନୀ ।

ପ୍ରିୟ ମହାଶୟ !

ଯଥାସମୟରେ ନିମନ୍ତ୍ରଣପତ୍ର ପାଇଅଛୁ । କିନ୍ତୁ ମୋର ଶାରୀରିକ ଅସୁସ୍ଥତା ନିବନ୍ଧନ ମାତୃସେବା ମିଳନମେଳାରେ ଉପସ୍ଥିତ ହୋଇପାରୁ ନ ଥିବାରୁ ଦୁଃଖିତ ହେଉଅଛୁ । ଅନୁଗ୍ରହ କରି କ୍ଷମା ଦେବା ହେବେ । ସମ୍ମିଳନୀର ଭାବଗତି ନିର୍ଦ୍ଧାରଣରେ ମୋହର ସମ୍ପୂର୍ଣ୍ଣ ସହାନୁଭୂତି ଅଛି । ଉତ୍କଳର ଉତ୍ତରୋତ୍ତର ଉନ୍ନତି-ସାଧନ ହେଉ । ଏହାହିଁ ମଙ୍ଗଳମୟ ପରମେଶ୍ୱରଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ।

---

ଶ୍ରୀ ରାମଚନ୍ଦ୍ର ଭାଞ୍ଜ
ଖରସୁଆଁ
ସିଂହଭୂମ ।

ମହାତ୍ମନ୍ !

ଭବଦୀୟ ତା ୬।୧୧ ନିମନ୍ତ୍ରଣପତ୍ର ଯଥାସମୟରେ ପ୍ରାପ୍ତ ହୋଇ ବାଲେଶ୍ୱର ଉତ୍କଳସମ୍ମିଳନୀ ସ୍ୱରୂପ ଉତ୍କଳମାତାଙ୍କ ଯଜ୍ଞପୀଠକୁ ସମାଗତ ଉତ୍କଳ ଭ୍ରାତୃବୃନ୍ଦଙ୍କୁ ଦେଖି ଚକ୍ଷୁ, କର୍ଣ୍ଣ ଓ ମନର ଶାନ୍ତିଲାଭ କରତଃ ସମବେତ ଭ୍ରାତୃବୃନ୍ଦଙ୍କ ସହିତ ଉତ୍କଳମାତାଙ୍କ ଶୁଭ ଯଜ୍ଞରେ ଯୋଗ ଦେବାଲାଗି ବହୁଦିବସଠାରୁ ଉତ୍କଣ୍ଠିତ ଥିଲି କିନ୍ତୁ ବଡ଼ ଦୁଃଖର ବିଷୟ ଯେ ସ୍ୱୀୟ ଶରୀର ଜ୍ୱରାକ୍ରାନ୍ତ ହୋଇ ବିଶେଷ ଦୁର-

ବସ୍ଥାରେ ଥିବା ନିବନ୍ଧନ ସେଥିରେ ଯୋଗ ଦେବାକୁ ଅସମର୍ଥ ହେଲୁ । ଅତଏବ ଅନୁରୋଧ କରୁଅଛୁ ଯେ ସେଠାରେ ଯୋଗଦାନ ନ କରି ପାରିବା କାରଣ ଆମ୍ଭ ଉତ୍କଳ ଭ୍ରାତୃବୃନ୍ଦଙ୍କୁ ଅନୁଗ୍ରହ ପୂର୍ବକ ଗୋଚର କରାଇ ଦୋଷ ମାର୍ଜନା କରିବା ହେବେ । ଆଶାକରେ ଏ ବର୍ଷ ସମ୍ମିଳନୀର କାର୍ଯ୍ୟ ଅତିସୁଶୃଙ୍ଖଳ ସହିତ ସମାହିତ ହେବ ।

---

Lakhman Kar, Secretary
Mandasa Road
29-12-16

Sreejut Joymangul Rath, Narasingh Panigrahi and Ballabhnarayan Patra held branch Sammilani Choukipet-Jalantra taluq assembled about hundred from seven villages sympathise Conference.

---

Raja of Dharakote
29-12-16

Unavoidably detained here full sympathy for Conference wish every success.

---

Dinabandhu Ratnaparkhya
Chatrapur
29-12-16

Suffering fever please excuse my absence.

---

Biswanath Barma
Khallikote
29-12-16

My sympathy could not attend owing pressure of work.

---

From Mandasa Road
29-12-16

Branch Sammilani presided Ananda Patajosi sympathises hearty congratulations.

---

Bhajahari Patanaik
Khallikote

Regret unable to attend Conference has sympathy with it.

Prajabandhu Samity
Rambha.

Five hundred people assembled full sympathy with the proposal of the Conference with their souls there though bodies here.

---

Hon'ble Mr. M. S. Das C. I. E

Convey my regret to my bretheren that I cannot be present though absent in body my heart and soul join you in your efforts to raise Orissa please invite conference in my name to Cuttack next year.

---

Nrupalal Singh
Zamindar, Jharsogra,
29-12-16

I cannot attend in the meeting please excuse.

---

ଶ୍ରୀ ଗଙ୍ଗାଧର ମିଶ୍ର ଶର୍ମା ।
ଢେଙ୍କାନାଳ
ତା ୨୮।୧୨।୧୬

ମହାଶୟ !

ମୁଁ ଜଣେ ନଗଣ୍ୟ ମୂର୍ଖ, ମୋହର ତତ୍ତ୍ୱ ଲିଖିତ ନିବେଦନଟି ସମ୍ମିଳନୀର ସଭ୍ୟବୃନ୍ଦ ତଥା ଉତ୍କଳୀୟ ଭ୍ରାତାମାନଙ୍କର ଶ୍ରବଣ ଗୋଚର ଉପର ଉପସ୍ଥିତ କରିବା ହେବେ ।

"ଉତ୍କଳସମ୍ମିଳନୀର ଦ୍ୱାଦଶ ଅଧିବେଶନ ବର୍ତ୍ତମାନ ଶେଷ ହେବାକୁ ହେଲା ତଥାପି ସମ୍ମିଳନୀର ଅଧିବେଶନ କୌଣସି ବର୍ଷ କୌଣସି ଗଡ଼ଜାତ ପ୍ରଦେଶରେ ହୋଇ ନାହିଁ । ଏହାଦ୍ୱାରା ସମ୍ମିଳନୀର ସଭ୍ୟବୃନ୍ଦ ତଥା ଉତ୍କଳୀୟଭ୍ରାତାମାନେ ଯେ ସମାନଙ୍କର ଗଡ଼ଜାତ ବାସୀମାନଙ୍କର ଅଭାବ ଅସୁବିଧା ହୃଦୟଙ୍ଗମ କରିବାରେ

ଅକ୍ଷମ ହୋଇଥିବା ବିଷୟ ସେମାନଙ୍କୁ ଜଣାଇ ଦେବା ଏ ନିବେଦନପତ୍ରର ପ୍ରଧାନ ଉଦ୍ଦେଶ୍ୟ । ଉତ୍କଳର ଉନ୍ନତିକାମନା କରିବାକୁ ଗଲେ ଗଡ଼ଜାତମହାଲକୁ ବାଦ୍ ଦେଇ କେବଳ ପୁରୀ କଟକ ବାଲେଶ୍ୱର ସୀମାବେଷ୍ଟିତ ଭୂଭାଗର ଅଭାବ ଅସୁବିଧା ବିଷୟ ଆଲୋଚନା କଲେ ସମସ୍ତ ଉତ୍କଳର ଉନ୍ନତି କିପରି ହେବ ତାହା ଉତ୍କଳୀୟ ଭ୍ରାତାମାନେ ବିଶେଷ ବିବେଚନା କଲେ ଅନେକ ଗଡ଼ଜାତମାନଙ୍କରେ ଅଧିବାସିମାନଙ୍କର ଅବସ୍ଥା ବର୍ତ୍ତମାନ ଏହି ଭାବ ଧାରଣ କରି ନ ଥାନ୍ତା ।

ଏହି ଗଡ଼ଜାତର ଅଧିକାଂଶ ଅଧିବାସୀ ସମ୍ମିଳନୀର ଉଦ୍ଦେଶ୍ୟ ବୁଝିବା ଦୂରେଥାଉ ସମ୍ମିଳନୀର ଅସ୍ତିତ୍ୱ ଅବଗତ ନାହାନ୍ତି । ସେମାନେ ଏପରି ଦୁର୍ଦ୍ଦଶାଗ୍ରସ୍ତ, ସାଧାରଣ ଉନ୍ନତିପଥରେ ଅଗ୍ରସର ହେବା ଜନ୍ମରୁ ଏପରି ବଞ୍ଚିତ, ସେମାନଙ୍କର ଅଭାବ ଅସୁବିଧା କେତେଦୂର ଜଟିଳଭାବରେ ପଡ଼ିଅଛି, ଉତ୍କଳୀୟ ଭ୍ରାତୃବୃନ୍ଦ ଯାହା ନୟନଗୋଚର କଲେ ସେମାନଙ୍କର କାହିଁକି ସାଧାରଣ ଲୋକର ହୃଦୟ ବ୍ୟଥିତ ହୁଅନ୍ତା । ସେମାନଙ୍କର ଏପରି କୌଣସି ଶକ୍ତି ବା ଉପାୟ ନାହିଁ ଯଦ୍ଦ୍ୱାରା ସେମାନେ ନିଜନିଜର ଅଭାବ ସମ୍ମିଳନୀର ଗୋଚରକୁ ଆଣିପାରିବେ । ଉତ୍କଳର ଉନ୍ନତି କରିବାକୁ ଚେଷ୍ଟା କଲେ ଗଡ଼ଜାତମହାଲକୁ ଉତ୍କଳର ପ୍ରଧାନ ଅଙ୍ଗ ସ୍ୱରୂପ ସମ୍ମିଳନୀରେ ଗ୍ରହଣ କରିଗଲେ ଉତ୍ତମ ହୁଅନ୍ତା । ଯେଉଁ ସ୍ୱାଧୀନ ହୃଦୟରେ ଉତ୍କଳୀୟଭ୍ରାତୃବୃନ୍ଦ ଏହି ସମ୍ମିଳନୀରେ ଯୋଗ ଦେବା କାରଣ ବାଲେଶ୍ୱରରେ ସମବେତ ଗଡ଼ଜାତବାସିମାନଙ୍କର ସେ ସ୍ୱାଧୀନତା ନାହିଁ । ସମ୍ମିଳନୀର ନେତୃବୃନ୍ଦ ତଥା ଉତ୍କଳୀୟ ସେମାନଙ୍କର ଗଡ଼ଜାତବାସି ଭ୍ରାତାମାନଙ୍କର ଅବସ୍ଥା ଅଭାବାଦି ପର୍ଯ୍ୟବେକ୍ଷଣ କରି ସେମାନଙ୍କୁ କିପରି ସହଜ ଏକ ପଥରେ ଅଗ୍ରସର ହୋଇ ସମ୍ମିଳନୀର ଉଦ୍ଦେଶ୍ୟ ସାଧନ କରାଇବେ ବୁଝି ଦେବା କାରଣ ମୋହର ଏକାନ୍ତ ମୋର ନିବେଦନ ।



# ସଭାପତିଙ୍କ ଅଭିଭାଷଣ ।



" ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ "

ଭାଇମାନେ !

ପୁଣି ବର୍ଷକ ପରେ ଆଜି ସାକ୍ଷାତ୍ । ମାତୃ ପୂଜା ବେଦୀରେ ଏହି ବାର୍ଷିକ ମିଳନ କେଡ଼େ ସୁନ୍ଦର ! କେଜାଣି କେଉଁଠାଇଁ ଏହି ଶୁଭଦିନ ଲାଗି, ଏହି ମଙ୍ଗଳ ମିଳନରେ ଯୋଗଦେବା ପାଇଁ କେତେ ପ୍ରାଣ ଅଧୀର ହୋଇ ଅନାଇ ରହୁଥିଲେ । କେଜାଣି କି ଶକ୍ତିରେ ଆକୃଷ୍ଟ ହୋଇ ଆଜି ଦେଶରେ ଅଞ୍ଚଳରୁ କେତେ ସହୃଦୟ ସ୍ୱଦେଶସେବକ ଏହି ସଙ୍ଘପୀଠରେ ଆସି ସମ୍ମିଳିତ ହୋଇଅଛନ୍ତି । ଏହି ମହାମିଳନରେ ମତେ ସଭାପତିର ଆସନ ଦିଆଯାଇଅଛି । ଏହା ଯେ କୌଣସି ବ୍ୟକ୍ତି ପକ୍ଷେ ଗୌରବର ପଦ । ଲୋକ ଯେତେ ଧନୀ ହେଉ, ଜ୍ଞାନୀ ହେଉ, ଯେତେ ଅସାମାନ୍ୟ ଶକ୍ତି ଓ ପ୍ରଭାବଶାଳୀ ହୋଇଥାଉନ୍ତୁ, ସମସ୍ତ ଜାତିର ଶ୍ରଦ୍ଧା ଓ ସମ୍ମାନଭାଜନ ହେବା ତା ପକ୍ଷରେ ଅଳ୍ପ ସୌଭାଗ୍ୟର ବିଷୟ ନୁହେଁ । ପୁଣି ମୋପରି ଅକିଞ୍ଚନ ବ୍ୟକ୍ତି ପକ୍ଷେ ଏ ସମ୍ମାନ କଳ୍ପନାର ଅତୀତ । ମୁଁ ଜାଣେ ମୁଁ ଏ ପଦର ସମ୍ପୂର୍ଣ୍ଣ ଅନୁପଯୁକ୍ତ । ଜାତୀୟ କାର୍ଯ୍ୟକ୍ଷେତ୍ରରେ ମୋହର ସାଧନା ନାହିଁ । ସେପରି ମଧ୍ୟ ଶିକ୍ଷା ନାହିଁ । ଅଛି କେବଳ ମୋହର ଜାତି ପ୍ରତି ଭକ୍ତି, ଜାତିର ଭବିଷ୍ୟତରେ ବିଶ୍ୱାସ ଏବଂ ଜାତିର ଉନ୍ନତି ନିମନ୍ତେ ପ୍ରାଣରେ କାମନା । କେଜାଣି କାହିଁକି ଏହି ଅଭାଜନ ଉପରେ ଏତେବଡ଼ ଗୌରବମୟ ଗୁରୁ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟର ଭାର ନ୍ୟସ୍ତ ହେଲା । ଏହା ସମସ୍ତ ଜାତିର ଆଦେଶ, ସୁତରାଂ ଅଲଂଘନୀୟ । ଏହି ବିଶ୍ୱାସରେ ମୋହର ଶତ ତ୍ରୁଟି, ଦୁର୍ବଳତା ଓ ଅଯୋଗ୍ୟତା ସତ୍ତ୍ୱେ ଏ ଭାର ଶିରୋଧାର୍ଯ୍ୟ କଲି । ଜାଣି ଶୁଣି ଯେଉଁମାନେ ମୋ ଅଯୋଗ୍ୟ ହସ୍ତରେ ଏହି ଭାର ନ୍ୟସ୍ତ କରିଅଛନ୍ତି, ତାହାର କାର୍ଯ୍ୟରେ ଯେ ଭ୍ରମ ପ୍ରମାଦ ତ୍ରୁଟି ଆଦି ଘଟିବ—ଅବଶ୍ୟ ଘଟିବ—ସେମାନେ ତାହା ସବୁ ମାର୍ଜନା କରିବେ, ଏହା ମୋହର ସମ୍ପୂର୍ଣ୍ଣ ଭରସା । ଆପଣମାନଙ୍କ କ୍ଷମାଗୁଣ, ହୃଦୟତା, ଏବଂ ସହାନୁଭୂତି ଉପରେ ମୋହର ପ୍ରଧାନ ନିର୍ଭର ଓ ସମସ୍ତ ଭରସା ।

## ରାଷ୍ଟ୍ରୀୟ ଦୁର୍ଘଟନା ।

ଉତ୍କଳସମ୍ମିଳନୀର ବିଗତ ଦୁଇ ଅଧିବେଶନ ଯେଉଁ ରାଷ୍ଟ୍ରୀୟ ଦୁର୍ଘଟନାରେ ଦୁଃଖ ପ୍ରକାଶ କରିଅଛନ୍ତି ଆଜ ସୁଦ୍ଧା ତାହା ଦୂର ନାହିଁ—କେବେ ଯେ ଦୂରୀଭୂତ ହେବ ନିଶ୍ଚୟ କରି କହି ପାରେ ? ମାତ୍ର ଏହି ଉପେକ୍ଷଣୀୟ ବିପ୍ଳବର ବିରାମ ନ ହେବା ଯାଏ ଅମ୍ଭମାନଙ୍କ ମନରୁ ଉଦ୍‌ବେଗ ଦୂର ହେବ ନାହିଁ । ବିରାଟ ବ୍ରିଟିଶ ସାମ୍ରାଜ୍ୟ ସଙ୍ଗେ ବିଶ୍ୱରଣରେ ଭାରତର ଭାଗ୍ୟ ଅବଦ୍ଧ । ସାମ୍ରାଜ୍ୟ ସମ୍ମିଳନୀରେ ଭାରତର ସ୍ଥାନ ଯାହା ହେଉ ପଛକେ ଭାରତ ଯେ ବ୍ରିଟିଶ ସାମ୍ରାଜ୍ୟର ଗୋଟିଏ ବିଶିଷ୍ଟ ଓ ଅବଶ୍ୟକୀୟ ଅଙ୍ଗ, ତାହା କଦାପି ଅସ୍ୱୀକାର କରିଯାଇ ନ ପାରେ । ସାମ୍ରାଜ୍ୟରେ ଭାରତର ପ୍ରୟୋଜନୀୟତା ଉପସ୍ଥିତ ଘଟନାରେ ବିଶଦରୂପେ ପ୍ରମାଣିତ ହୋଇଅଛି । ଭାରତ ପ୍ରତ୍ୟକ୍ଷ ଭାବରେ ଆକ୍ରାନ୍ତ ହୋଇ ନ ଥିଲେହେଁ ଯୁଦ୍ଧହେତୁ ତାହାର ଅଳ୍ପ ବହୁତ ପରିମାଣରେ ପ୍ରତିହତ ହୋଇଅଛି । ସାମାନ୍ୟ ପଲ୍ଲୀବାସୀ ଆଜ ତାହାର ପ୍ରୟୋଜନୀୟ ବ୍ୟବହାର୍ଯ୍ୟ ପଦାର୍ଥ କିଣିବାରେ ଯୁଦ୍ଧର ବିଷମୟ ଫଳ ଅନୁଭବ କରୁଅଛି । ରାଜଭକ୍ତି ଭାରତର ସ୍ୱଭାବ ସିଦ୍ଧ ଗୁଣ । ତାହା ବର୍ତ୍ତମାନ ଘଟଣାରେ ଯେତେଦୂର ପ୍ରକାଶ ପାଇଅଛି ତତ୍ପୂର୍ବେ ସେହିପରି ଫୁଟି ବାହାରିବାର ସୁଯୋଗ ଘଟିପାରି ନ ଥିଲା । ଏହା ଦୁର୍ଯୋଗରେ ସୁଯୋଗ । ଇଂରେଜ ରାଜ. ସମ୍ପ୍ରତି ଭାରତର ଉପାଦେୟତା ଏବଂ ମୂଲ୍ୟ ଉତ୍ତମରୂପେ ବୁଝିଅଛନ୍ତି ବୋଲି ବିଶ୍ୱାସ ହୁଏ ।

## ଘ ରାଜଭକ୍ତି ।

ଭାରତ ଭକ୍ତିର ଭୂମି—ଉତ୍କଳ ସେହି ଭୂମିର କେନ୍ଦ୍ର । ଉତ୍କଳଧର୍ମପ୍ରବର୍ତ୍ତକ ମହାପୁରୁଷମାନେ ଉତ୍କଳକୁ ପ୍ରିୟ ପୁଣ୍ୟତୀର୍ଥ ମଣି ଉତ୍କଳର ପବିତ୍ର ଧୂଳିରାଶିରେ ନିଜ ନିଜର ଅଙ୍ଗ ମିଳାଇ ଦେଇଅଛନ୍ତି । ରାଜଭକ୍ତି, ଗୁରୁଭକ୍ତି, ମାତୃଭକ୍ତି, ପିତୃଭକ୍ତି ଇତ୍ୟାଦି ଭଗବଦ୍ ଭକ୍ତିର ଭିନ୍ନ ଭିନ୍ନ ପାର୍ଥିବ ବିକାଶ ମାତ୍ର ; ସୁତରାଂ ଭକ୍ତିର ଏହି ପାର୍ଥିବ ବିକାଶମାନ ଓଡ଼ିଶାରେ ଯେ ରହିଛି ଏହା ବୋଲିବା ବାହୁଲ୍ୟ ମାତ୍ର । ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଓଡ଼ିଶା ଅତ୍ୟନ୍ତ ଦରିଦ୍ର ଖଣ୍ଡ ବିଖଣ୍ଡ ହୋଇ ଭିନ୍ନ ପ୍ରାଦେଶିକ ଶାସନାଧୀନ ହୋଇ ରହି ଥିବାରୁ ଏହାର ସମ୍ମିଳିତ ଶକ୍ତିର ପୂର୍ଣ୍ଣ ବିକାଶ ହୋଇପାରୁ ନାହିଁ । ସୁତରାଂ ଉପସ୍ଥିତ ରାଷ୍ଟ୍ରୀୟ ଦୁର୍ଦ୍ଦିନରେ ଓଡ଼ିଆମାନେ ମନ ଅନୁସାରେ ସାହାଯ୍ୟ ଦେବାକୁ ଅସମର୍ଥ । ପୁଣି ବ୍ୟକ୍ତି-ଭାବରେ ସ୍ଥାନ ବିଶେଷର ଓଡ଼ିଆମାନେ ଯେ ଯଥାଶକ୍ତି ସାହାଯ୍ୟ କରୁଅଛନ୍ତି,

ଓଡ଼ିଆ ଜାତିର ଶାସନ ଏକ୍ତାର ଅଭାବରୁ ସେ ଜାତିର ସମ୍ପୂର୍ଣ୍ଣ [illegible] ଦଣ୍ଡ ନାହିଁ । ସେ ଯାହାହେଉ ଏ କ୍ଷେତ୍ରରେ ଆମ୍ଭମାନେ [illegible] ମନ କରୁଅଛୁଁ ବା ଯାହା କରି ପାରୁଥାନ୍ତୁ, ସେ ସବୁ [illegible] ଆମ୍ଭମାନଙ୍କର ଅଟଳ ରାଜଭକ୍ତି ଓ ସାମ୍ରାଜ୍ୟର ଅଖଣ୍ଡ କଲ୍ୟାଣ କାମନା ବାରମ୍ବାର ଜଣାଉଅଛୁଁ ଏବଂ ଆଜ ମଧ୍ୟ ଏହି ଜାତୀୟ ସମ୍ମିଳନୀ ମଣ୍ଡପରୁ ପୁନଶ୍ଚ ବ୍ୟକ୍ତ କରୁଅଛୁଁ । ଓଡ଼ିଆମାନଙ୍କର ଅନ୍ତରକ୍ତ ରାଜଭକ୍ତିକୁ କେହି କେହି ବ୍ୟଙ୍ଗ କରି "Orissa is the hotbed of loyalty" ବୋଲି କହିବାର ଶୁଣାଯାଇଥାଏ । ମାତ୍ର ଉତ୍କଳ ପ୍ରକୃତ ଏହି ବ୍ୟଙ୍ଗ ବାକ୍ୟ ପରେ ବିଚଳିତ ହେବାର ନୁହେ । ସାମ୍ରାଜ୍ୟ ନିମନ୍ତେ ଆମ୍ଭମାନଙ୍କର ଆତ୍ମୋତ୍ସର୍ଗ ଏହି ଭକ୍ତିର ସମୁଚିତ ପରିଚୟ ଦେଉଅଛି । ଉପସ୍ଥିତ ଯୁଦ୍ଧରେ ଏହିକାଳ ପ୍ରତ୍ୟକ୍ଷ ଆତ୍ମୋତ୍ସର୍ଗର ପରିଚୟ ଦେବାଲାଗି ବଙ୍ଗାଳୀମାନେ ସୁବିଧା ଓ ସୁଯୋଗ ପାଉଅଛନ୍ତି—ଏହା ଅବଶ୍ୟ ଅତ୍ୟନ୍ତ ସୁଖର ବିଷୟ । ଭାରତର ଅନ୍ୟ ଅଞ୍ଚଳର କୌଣସି କୌଣସି ରାଜା ମହାରାଜମାନେ ମଧ୍ୟ ନିଜର ବିଳାସ ବିଭବ ତ୍ୟାଗକରି ସମରାଙ୍ଗଣରେ ଅବତୀର୍ଣ୍ଣ ହେବାର ଅବକାଶ ପାଇଲେ । କିନ୍ତୁ ଓଡ଼ିଆମାନଙ୍କ ଭାଗ୍ୟରେ ଏ ସୁଯୋଗ ଅଦ୍ୟାପି ଘଟିନାହିଁ । ପ୍ରାଚୀନ ଓଡ଼ିଆ ପାଇକମାନଙ୍କର ବଂଶଧରମାନେ ଅଦ୍ୟାପି ଲୋପ ପାଇନାହାନ୍ତି । ଉତ୍କଳୀୟ କ୍ଷତ୍ରିୟ ରାଜନ୍ୟବର୍ଗ, ବଂଶର ପୂର୍ବ ମର୍ଯ୍ୟାଦା ଓ ସମ୍ମାନ ଅଦ୍ୟାପି ଭୁଲିନାହାନ୍ତି । ଉପଯୁକ୍ତ ସାମରିକ ଶିକ୍ଷା ପାଇଲେ ଏମାନେ ଯେ ସାମ୍ରାଜ୍ୟର ବିଶେଷ ଶ୍ରେୟରେ ଆସିବେ, ଏଥିରେ କୌଣସିପ୍ରକାର ଶଙ୍କା ସନ୍ଦେହ ନାହିଁ । ମୁଁ ନିଜେ ଯୁଦ୍ଧରେ ଯୋଗଦେବା ନିମନ୍ତେ କର୍ତ୍ତୃପକ୍ଷମାନଙ୍କୁ ମୋହର ଇଚ୍ଛା ଜଣାଇଥିଲି । ସେ ଇଚ୍ଛାଲାଗି ମୁଁ କେବଳ ଧନ୍ୟବାଦ ପାଇଅଛି । ମନ ଇଚ୍ଛା ଚରିତାର୍ଥ କରିବାର ସୁଯୋଗ ପାଇଲେ ମୁଁ କୃତକୃତ୍ୟ ହୁଅନ୍ତି । ଓଡ଼ିଶାରେ ଏହିପରି ଅପ୍ରକାଶିତ ଓ ପ୍ରକାଶିତ ଭାବରେ ଏହି ଇଚ୍ଛା ରହିଅଛି । ଉତ୍ସାହ ଓ ସୁଯୋଗ ମିଳିଲେ ଓଡ଼ିଆମାନେ ନିଶ୍ଚୟ ଏକ ସୈନ୍ୟଦଳ ଗଠନ କରିପାରନ୍ତେ ଏବଂ ପ୍ରତ୍ୟକ୍ଷ ଭାବରେ ଆତ୍ମୋତ୍ସର୍ଗ କରି ଗୌରବାନ୍ୱିତ ହୁଅନ୍ତେ । ସମର କ୍ଷେତ୍ରରେ ପ୍ରତ୍ୟକ୍ଷ ଭାବରେ ଅସ୍ତ୍ରଧାରଣଦ୍ୱାରା ରାଜଭକ୍ତିର ପରିଚୟ ପ୍ରଦର୍ଶନ କରିବାର ସୁଯୋଗ ପାଇ ନ ଥିଲେ ସୁଦ୍ଧା ଓଡ଼ିଆମାନେ ତାଙ୍କ ସଙ୍କୀର୍ଣ୍ଣ କ୍ଷେତ୍ରରେ ଓ ନିଜ ସବୁପାଣରେ ସେତିକ ରାଜଭକ୍ତିର ଯେଉଁ ପରିଚୟ ଦେଇଅଛନ୍ତି ତାହା, ଆଶା କରେଁ, ସେ ଅଦ୍ୟାପି ଭୁଲିନାହାନ୍ତି । ବାଲେଶ୍ୱର ଜିଲ୍ଲାକୁ ଧନ୍ୟବାଦ ।

## ବାଲେଶ୍ୱର ଘଟଣା ।

ବାଲେଶ୍ୱରର କତିପୟ ଓଡ଼ିଆ ପ୍ରଜାମାନେ ନିଜ ଜୀବନକୁ ବିପଦାପନ୍ନ କରି ଦୁର୍ବୃତ୍ତ ରାଜଦ୍ରୋହୀ ବଙ୍ଗୀୟ ଯୁବକମାନଙ୍କୁ ଧରିବାରେ ଯେପରି ସାହାଯ୍ୟ କରିଥିଲେ ତାହା ସେମାନଙ୍କ ପକ୍ଷେ ବିଶେଷ ପ୍ରଶଂସାର ବିଷୟ । ମାତ୍ର ଆକ୍ଷେପର କଥା ସେହି ରାଜଦ୍ରୋହୀମାନଙ୍କ ବିଚାର ନିମନ୍ତେ ବାଲେଶ୍ୱରରେ ଯେ Defence of India Act ପ୍ରବର୍ତ୍ତିଲା, ବିଚାର ପରେ ତାହା ଅଦ୍ୟାପି ପୁଣି ରହିଅଛି । କୌଣସି ଉତ୍କଳୀୟ ଅଞ୍ଚଳରେ ଏହି ଆଇନ ଜାରି ହେବା ଓଡ଼ିଆ ଚରିତ୍ର ସଙ୍ଗେ ମେଳ ଖାଉନାହିଁ । ଯେ ବିଶେଷ ଘଟଣାରେ ଏହି ଆଇନର ପ୍ରବର୍ତ୍ତନ ହୋଇଥିଲା ସେ ଘଟଣା ଶେଷ ହୋଇଥିବାରୁ ଏ ବିଧାନ ଶୀଘ୍ର ଉଠାଇ ଦିଆଯିବାର ବାଞ୍ଛନୀୟ । ଯୁଦ୍ଧଅନ୍ତେ ଭାରତବାସିଙ୍କୁ କି ଅଧିକାର ମିଳିବ, ଏହା ଭାରତରେ ଏବଂ ବିଲାତରେ ଅନେକ ବଡ ବଡ଼ ବ୍ୟକ୍ତିଙ୍କର ଆଲୋଚନାର ବିଷୟ ହୋଇଅଛି । ଓଡ଼ିଆମାନେ ଅବଶ୍ୟ ଏପରି ବିଚାରର ବହୁଦୂରରେ । ମାତ୍ର ଓଡ଼ିଆମାନଙ୍କର ଏହା ବିଶ୍ୱାସ ଯେ ଭାରତୀୟ ରାଜଭକ୍ତିର ଯଥୋଚିତ ପୁରସ୍କାର ଅବଶ୍ୟ ମିଳିବ ଏବଂ କ୍ଷୁଦ୍ର ଓଡ଼ିଶା ମଧ୍ୟ ତାହାର ନ୍ୟାଯ୍ୟ ଅଂଶରୁ ବଞ୍ଚିତ ହେବନାହିଁ ।

## ଦେଶ ମିଶ୍ରଣ ।

ଅନ୍ୟାନ୍ୟ ଲାଭ ମଧ୍ୟରେ ଯୁଦ୍ଧ ଅବସାନ ପରେ ଓଡ଼ିଆମାନଙ୍କର ଚିର ଈପ୍ସିତ ଦେଶମିଶ୍ରଣ ସମସ୍ୟାର ସମାଧାନ ହେବ ବୋଲି ଓଡ଼ିଆମାନେ ଆଶା ପୋଷଣ କରୁଅଛନ୍ତି । ଭିନ୍ନ ଭିନ୍ନ ଓଡ଼ିଆ ଅଞ୍ଚଳମାନ ଶାସନସୂତ୍ରରେ ଖଣ୍ଡବିଖଣ୍ଡ ହୋଇ ପଡ଼ିରହିଥିବାରୁ ଓଡ଼ିଆଜାତିର ଯେ କି ଅବନତି ଏବଂ ଦୂରବସ୍ଥା ଘଟିଅଛି, ତାହା ଏହି ସମ୍ମିଳନୀ ପ୍ରାରମ୍ଭରୁ ଆଜଯାଏ ପ୍ରତିବର୍ଷ ଏହି ମଣ୍ଡପରେ ଆଲୋଚିତ ହୋଇ ଓଡ଼ିଆ ପ୍ରାଣକୁ ଆଲୋଡ଼ିତ ଓ ଆନ୍ଦୋଳିତ କରୁଅଛି । ସମ୍ବାଦପତ୍ରମାନଙ୍କରେ ଏବଂ ବ୍ୟକ୍ତିବିଶେଷର ଚେଷ୍ଟାରେ ପ୍ରକୃତ ଓଡ଼ିଆଜାତିର ସ୍ୱପ୍ନ ଜାଗରଣ ସମସ୍ତ ଅବସ୍ଥାରେ, ଏହି ଦେଶମିଶ୍ରଣ ପ୍ରସଙ୍ଗ ନିରନ୍ତର ଗଭୀର ଭାବନାର ବିଷୟ ହୋଇଅଛି । ଏହି ସମ୍ବନ୍ଧେ ଯଥେଷ୍ଟ କୁହାଯାଇଅଛି । ଏ ବିଷୟର ଉତ୍ଥାପନ ପୁନରାବୃତ୍ତି ହେଲେ ପୁଣି ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆମାନେ ଏକଶାସନରେ ଅବସ୍ଥାପିତ ହୋଇ ନାହାନ୍ତି ସେତେଦିନ ଯାଏ ବାରମ୍ବାର ଏହାର ଆବୃତ୍ତି ଓ ଆନ୍ଦୋଳନ କରିବାକୁ ପଡ଼ୁଥିବ । ଶିକ୍ଷା ସାହିତ୍ୟ ଇତ୍ୟାଦି ଜାତୀୟ ଶକ୍ତିର ଭିନ୍ନ ଉପାଦାନମାନ ଶାସନ ବାହୁଲ୍ୟ ହେତୁ କାର୍ଯ୍ୟକାରୀ ହୋଇପାରୁ ନାହିଁ । ଗଞ୍ଜାମର

ଓଡ଼ିଆ ଶିଶୁ ଏବଂ ପୁରୀର ଓଡ଼ିଆ ଶିଶୁ ମଧ୍ୟରେ ପାରିବାରିକ ଲାଳନ ପାଳନ ପ୍ରଣାଳୀ, ଗାର୍ହସ୍ଥ୍ୟଶିକ୍ଷା, ସାମାଜିକ ଅନ୍ୟ ବ୍ୟବହାର ପ୍ରଭୃତି ସମାନ ହେଲେ ହେଁ ବିଦ୍ୟାଳୟରେ ଉଭୟଙ୍କର ଗତି, ମାନସିକ ଚାଳନାର ପ୍ରଣାଳୀ, ରୁଚିର ପୁସ୍ତକାଦି ଓ ପାରିପାର୍ଶ୍ୱିକ ଅବସ୍ଥା ସମାନ ନୁହେ । ସେହିପରି ସିଂହଭୂମ ଓ ସମ୍ବଲପୁର ଓଡ଼ିଆ ଶିଶୁର ଭାଷା ଓ ପାରିବାରିକ ଶିକ୍ଷା ଶାସନାଦିର ପାର୍ଥକ୍ୟ ନ ଥିଲେ ହେଁ ବିଦ୍ୟାଳୟରେ ତାହା ସ୍ୱତନ୍ତ୍ର । ଏହି ଶୋଚନୀୟ ଅବସ୍ଥାର ବିଷୟ ବିଚାର କଲେ ପ୍ରାଣରେ କି ଦାରୁଣ ବେଦନା ହୁଏ । ଏହିପରି ବିମାତା ଚାଳନରେ ଓଡ଼ିଆ ତାହାର ସ୍ୱାତନ୍ତ୍ର୍ୟ ବା କେତେଦିନ ରକ୍ଷିପାରିବ ? ଶିକ୍ଷା ତଥା ଶାସନ ପାର୍ଥକ୍ୟ ହେତୁ ଅନ୍ୟାନ୍ୟ ବିଷୟରେ ଓଡ଼ିଆମାନଙ୍କର ଯେ କଷ୍ଟ ଓ ଅସୁବିଧା ହେଉଅଛି ତାହା ସମ୍ମିଳନୀର ପୂର୍ବ ଅଧିବେଶନମାନଙ୍କର ବକ୍ତା ଓ ସଭାପତିମାନେ ବିଶଦରୂପେ ଆଲୋଚନା କରିଅଛନ୍ତି । ସରକାରଙ୍କ କାନରେ ମଧ୍ୟ ଆମ୍ଭମାନଙ୍କର ଏ ଗୁହାରି ବାରମ୍ବାର ପଡ଼ିଅଛି । ଫଳ ନ ମିଳିବା ଯାଏ ଆମ୍ଭେମାନେ ବାରମ୍ବାର ଏକଥା କାନରେ ପକାଉ ଥିବୁ । ଭାଷା ସୂତ୍ରରେ ପ୍ରଦେଶଗଠନ ନୀତି ଭାରତରେ ଏବଂ ପ୍ରକାର ମହାମହିମ ସମ୍ରାଟ ନିଜେ ପ୍ରତିଷ୍ଠା କରି ଯାଇଅଛନ୍ତି । ନୂତନ ପ୍ରଦେଶ ଗଠନରେ ଏ ନୀତିର ପ୍ରବର୍ତ୍ତନ ପୂର୍ବରୁ ଓଡ଼ିଆମାନେ ଏଥିଲାଗି ଗୁହାରି କରି ଆସୁଅଛନ୍ତି । ସମ୍ପ୍ରତି ମାନ୍ଦ୍ରାଜ ପ୍ରଦେଶରେ ଅନ୍ଧ୍ରମାନେ ଭାଷାସୂତ୍ରରେ ସ୍ୱତନ୍ତ୍ର ଆନ୍ଧ୍ର ପ୍ରଦେଶ-ଗଠନର ଯତ୍ନରେ ଅଛନ୍ତି । ଆନ୍ଧ୍ର ଜାତିର ଉଦାରହୃଦୟ ବିଶିଷ୍ଟ ନେତାମାନେ ଓଡ଼ିଆମାନଙ୍କର ଦେଶମିଶଣ ପ୍ରସ୍ତାବରେ ସହାନୁଭୂତି ପ୍ରକାଶ କରୁଅଛନ୍ତି । ଏପରି ସହାନୁଭୂତି ଆମ୍ଭମାନଙ୍କ ଉଦ୍ୟମର ଅନୁକୂଳ ବୋଲି ମୁଁ ମନେକରେ । ଆମ୍ଭମାନଙ୍କୁ ଭିନ୍ନ ଭିନ୍ନ କରି ରଖିବାରେ ଗଭର୍ଣ୍ଣମେଣ୍ଟଙ୍କର କୌଣସି ସ୍ୱାର୍ଥ ଥାଇ ନପାରେ । ଘଟଣା କ୍ରମେ ଯେତେବେଳେ ଯେଉଁ ଓଡ଼ିଆଅଞ୍ଚଳ ଯେ ପ୍ରଦେଶ ସଙ୍ଗେ ଏକକାଳୀନ ଇଂରେଜ ଶାସନାଧୀନରେ ଆସିଅଛି ତାହା ଏତାବତ୍‌କ୍ରମେ ସେହିପରି ଚିରଦିନରୁ ରହି ଯାଇଅଛି । ଇଂରେଜ ଶାସକମାନଙ୍କର ରକ୍ଷଣଶୀଳ ନୀତି । ବିଶେଷ ଅସୁବିଧା ନ ଦେଖିଲେ ପ୍ରଚଳିତ ନୀତି ପରିବର୍ତ୍ତନ କରିବାକୁ ମନ ବଳାନ୍ତି ନାହିଁ । ଭିନ୍ନଭିନ୍ନ ଓଡ଼ିଆ ଅଞ୍ଚଳ କୌଣସି କୌଣସି ପ୍ରାଦେଶିକ ଶାସନ ପ୍ରତି ଯେ ଅସୁବିଧା ଘଟାଉଅଛି ତାହା ରାଜପୁରୁଷମାନେ ବେଳେ ବେଳେ ଉପଲବ୍ଧି କରିପାରୁ ଅଛନ୍ତି । ଏପରି ଅସୁବିଧା ନିଶ୍ଚୟ ଘଟିବ । ତେଣୁ ଲର୍ଡ଼ କର୍ଜନ ମାନ୍ଦ୍ରାଜ ଓଡ଼ିଆ ଅଞ୍ଚଳକୁ ସେହି ଶାସନର "Troublesome exorascence" ବା, ବିରକ୍ତିକର ଲଥା ବା ପିଠଉ ବୋଲି ବର୍ଣ୍ଣନା କରିଅଛନ୍ତି ।

ବାସ୍ତବରେ ଏହିପରି ଖଣ୍ଡ ଖଣ୍ଡ ଭିନ୍ନ ଭିନ୍ନ ଶାସନରେ ରହିଥିବାରୁ ଯେ ଉକ୍ତ ସେହି ସେହି ଶାସକମାନଙ୍କ ସୁପରିଚାଳନା କାର୍ଯ୍ୟକୁ ଅଯଥା ଜଟିଳ ଓ ଭାରାକ୍ରାନ୍ତ କରୁଅଛି ଏବଂ ନିଜ ଓଡ଼ିଶା ପ୍ରଦେଶକୁ କ୍ଷୀଣ ଓ କ୍ଷୁଦ୍ର କରୁଅଛି । ସରକାର କେବେ ଏ ଅସୁବିଧା ଦୂର କରି ଓଡ଼ିଆମାନଙ୍କୁ ଏକ ଶାସନାଧୀନରେ ରଖିବାର ବ୍ୟବସ୍ଥା କରିବେ ଆମ୍ଭେମାନେ ବ୍ୟାକୁଳ ପ୍ରାଣରେ ସେହି ଶୁଭ ଦିନକୁ ଅନାଇ ରହିଅଛୁଁ ।

## ବିଶିଷ୍ଟ ବ୍ୟକ୍ତିଙ୍କ ତିରୋଧାନ ।

ଏପରି ଅନାଇଁ ଅନାଇଁ ଆମ୍ଭମାନଙ୍କରୁ କେତେ ଚାଲିଗଲେଣି । ଏହି ବାଲେଶ୍ୱରର ସ୍ୱର୍ଗୀୟ ମହାରାଜା ଶ୍ରୀ ବୈକୁଣ୍ଠନାଥ ଦେ ବାହାଦୁର ଓଡ଼ିଆଭାଷୀ ପ୍ରଦେଶମାନଙ୍କୁ ଏକ ଶାସନାଧୀନ କରିବାଲାଗି ନାନାପ୍ରକାର ଆନ୍ଦୋଳନ ଓ ଆବେଦନ କରିଥିଲେ । ସେ କେବଳ ସମ୍ବଲପୁର ଓଡ଼ିଶା ସହ ସଂଯୋଗ ଦେଖି ଯାଇଅଛନ୍ତି । ଗଞ୍ଜାମର ହରସଂହ ଦାସ ଏହି ମିଶ୍ରଣ ଆନ୍ଦୋଳନରେ ସମସ୍ତ ଶକ୍ତି ସାମର୍ଥ୍ୟ ଢାଳି ଦେଇଥିଲେ । ସେ ଆଉ ନାହାନ୍ତି । ଏହି ମିଳନ କାମନାରେ ସ୍ୱର୍ଗୀୟ ମଧୁସୂଦନଙ୍କ ଭକ୍ତିପୂର୍ଣ୍ଣ ହୃଦୟରୁ କେତେ ଜାତୀୟ ସଙ୍ଗୀତ ନିଃସୃତ ହୋଇଥିଲା । ପୁରୀର ରାମଚନ୍ଦ୍ର ଦାସ ପ୍ରାଣର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏହି ଚିନ୍ତାରେ ଝୁରି ଝୁରି ଗଲେ । ଏହିପରି ପ୍ରକାଶ୍ୟରେ ହେଉ ବା ଅପ୍ରକାଶ୍ୟରେ ହେଉ, ମୁଖ୍ୟ ଭାବରେ ହେଉ ବା ଗୌଣ ଭାବରେ ହେଉ, ରାଜନୈତିକ, ସାମାଜିକ ବା ସାହିତ୍ୟିକ କ୍ଷେତ୍ରରେ ଯେଉଁମାନେ ଓଡ଼ିଆଜାତିର ଏକତ୍ୱ ଏବଂ ସମ୍ମିଳିତ ଶକ୍ତି ରକ୍ଷା କରିବା ଲାଗି ଚେଷ୍ଟା କରିଅଛନ୍ତି ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ କ୍ରମେ କର୍ମକ୍ଷେତ୍ରରୁ ଚାଲିଯିବା ଦେଶ ପକ୍ଷେ ଘୋର କ୍ଷତିର ବିଷୟ ।

ପ୍ରତିବର୍ଷ ଆମ୍ଭମାନଙ୍କୁ ଏହି ସମ୍ମିଳନୀ ମଣ୍ଡପରେ କାହାରି ନା କାହାରି ନିମନ୍ତେ ଶୋକ ପ୍ରକାଶ କରିବାକୁ ହେଉଅଛି । ବାଲେଶ୍ୱର ଯାହାଙ୍କ ଯତ୍ନ ଓ ପରାମର୍ଶରେ ଗତବର୍ଷ ସମ୍ବଲପୁରରୁ ସମ୍ମିଳନୀକୁ ଆମନ୍ତ୍ରଣ କରିଥିଲା ଆଜ ସେ ସାମନ୍ତ ଶ୍ୟାମଚରଣଙ୍କୁ ଦେଖିବାକୁ ପାଉନାହୁଁ । ଯେଉଁ ଛିଦାଜନ ଓଡ଼ିଆଭାଷା ଓ ସାହିତ୍ୟ ନିମନ୍ତେ ଏତେ ଯତ୍ନ ଓ ସାଧନା କରୁଥିଲେ, ଉତ୍କଳ ସାହିତ୍ୟର ଉନ୍ନତି ନିମନ୍ତେ ବ୍ୟକ୍ତିଗତ ଯତ୍ନ ଛଡ଼ା ଆର୍ଥିକ ଓ ଅନ୍ୟାନ୍ୟ ପ୍ରକାର ସାହାଯ୍ୟ କରୁଥିଲେ, ଦୁର୍ଭାଗ୍ୟର ସେହି ସୁଯୋଗ୍ୟ ନରପତି ଅକାଳରେ ଆମ୍ଭମାନଙ୍କ ମଧ୍ୟରୁ ଚାଲିଯାଇ ଅଛନ୍ତି । ଏମାନଙ୍କୁ ହରାଇବା ଆମ୍ଭମାନଙ୍କ ପକ୍ଷେ ଘୋର ଜାତୀୟ କ୍ଷତି । ଭଗବାନ ସେମାନଙ୍କ ଆତ୍ମାର ସଦ୍‌ଗତି କରନ୍ତୁ । ଏହିଭଳି କ୍ଷତି ଅବଶ୍ୟମ୍ଭାବୀ—

କିନ୍ତୁ ପାଶରେ ହାତର ତ ଅସୁବିଧା ? ମାତ୍ର ଏଥିରେ ବିରାଗ ନ ହୋଇ, ଜାତୀୟ କଲ୍ୟାଣରେ ବିଶ୍ୱାସ ରଖି ଆମ୍ଭମାନଙ୍କୁ କାର୍ଯ୍ୟରେ ଅଗ୍ରସର ହେବାକୁ ହେବ । ନାନା ବିଭାଗରେ ଓଡ଼ିଶାର ଅଭାବ ରହିଅଛି । ରାଜନୈତିକ ଏବଂ ସାମାଜିକ ପ୍ରଭୃତି ଭିନ୍ନ ଭିନ୍ନ କ୍ଷେତ୍ରରେ ନବ ନବ ଅବସ୍ଥା ଏବଂ ଘଟଣା ଉପସ୍ଥିତ ହେଉଅଛି । ଆମ୍ଭମାନଙ୍କୁ ସେ ସବୁର ସମ୍ମୁଖୀନ ହେବାକୁ ହେବ ଏବଂ ସେ ସବୁ ମଧ୍ୟରେ ସାଧ୍ୟାନୁସାରେ ଆମ୍ଭମାନଙ୍କର ସୁବିଧା କରିନେବାକୁ ହେବ ।

## ପାଟଣା ବିଶ୍ୱବିଦ୍ୟାଳୟ ।

ଉପସ୍ଥିତ ଏପରି ଘଟଣାମାନଙ୍କ ମଧ୍ୟରେ ପାଟଣା ବିଶ୍ୱବିଦ୍ୟାଳୟ ବ୍ୟବସ୍ଥା ଅନ୍ୟତମ । ଭାରତରେ ଶିକ୍ଷା ପ୍ରସାର କ୍ରମଶଃ ବୃଦ୍ଧିଅଛି ବ୍ୟାକୁଳତା ଦେଖାଯାଉଅଛି । ନୂତନ ନୂତନ ବିଶ୍ୱବିଦ୍ୟାଳୟର ସୃଷ୍ଟି ହେଉଅଛି । କାଶୀର ହିନ୍ଦୁ ବିଶ୍ୱବିଦ୍ୟାଳୟ ଭାରତୀୟ ଶିକ୍ଷା ବିଧାନରେ ଏକ ନୂତନ ପନ୍ଥା । ଦେଶୀୟ ରାଜ୍ୟ ମହୀଶୂରର ବିଶ୍ୱବିଦ୍ୟାଳୟ ଦେଶୀୟ ରାଜ୍ୟମାନଙ୍କ ପକ୍ଷରେ ଏକ ନୂତନ ଆଦର୍ଶ । ଏମାନଙ୍କ ସଙ୍ଗେ ସଙ୍ଗେ ବିହାର—ଓଡ଼ିଶା ପ୍ରଦେଶରେ ନୂତନ ବିଶ୍ୱବିଦ୍ୟାଳୟ ସ୍ଥାପନ ଆୟୋଜନ ହେଉଅଛି । ଏହାର ଅବାର ପ୍ରଭାବ ଉପରେ ଓଡ଼ିଆମାନଙ୍କର ଭାବୀ ଉନ୍ନତି ପରିମାଣରେ ନିର୍ଭର କରେ । ଅଦ୍ୟାବଧି ଓଡ଼ିଶା କଲିକତା ବିଶ୍ୱବିଦ୍ୟାଳୟର ଅଧୀନ ଅଛି । ସେହି ସମ୍ବନ୍ଧ ଓଡ଼ିଶା ପକ୍ଷେ ହିତକର ହୋଇଅଛି । ସେ ସମ୍ପର୍କ ଛାଡ଼ିବାକୁ ଓଡ଼ିଆଙ୍କର ଇଚ୍ଛା ନାହିଁ—ଛାଡ଼ିବାର ପ୍ରୟୋଜନ ମଧ୍ୟ ଦେଖାଯାଉନାହିଁ । ତଥାପି ସରକାର ନୂତନ ପ୍ରଦେଶ ପାଇଁ ଏବେବେଳେ ନୂତନ ବିଶ୍ୱବିଦ୍ୟାଳୟ କରୁଅଛନ୍ତି ଏବଂ ଓଡ଼ିଆଙ୍କର ଇଚ୍ଛା ଥାଉ ବା ନ ଥାଉ, ଯେତେବେଳେ ସେମାନଙ୍କ ଭାଗ୍ୟ ନୂତନ ପ୍ରଦେଶ ସହିତ ଯୋଡ଼ା ହୋଇ ସାରିଲାଣି, ଏହି ନୂତନ ଶିକ୍ଷା ବ୍ୟବସ୍ଥା ଗ୍ରହଣ କରିବାକୁ ସେମାନେ ବାଧ୍ୟ ବୋଲି ଅନେକେ ମନେ କରନ୍ତି । କିନ୍ତୁ ଶାସନ ନୀତିସଙ୍ଗେ ବିଶ୍ୱବିଦ୍ୟାଳୟର ପ୍ରତ୍ୟକ୍ଷ ସମ୍ବନ୍ଧ ଭାରତବର୍ଷରେ ଅଦ୍ୟାପି କେବେ ବନ୍ଦୀଭୂତ ହୋଇନାହିଁ ଏବଂ ସେପରି ନ ହେବା ମଧ୍ୟ ସର୍ବଥା ବାଞ୍ଛନୀୟ । ନୂତନ ପ୍ରଦେଶର ଶାସନ ଅଧୀନରେ ଥାଇ ଓଡ଼ିଶା ପୂର୍ବପରି କଲିକତା ବିଶ୍ୱବିଦ୍ୟାଳୟ ତଳେ ଥିଲେ କି ଅନିଷ୍ଟ ଓ ଅସୁବିଧା ହେବ ଜଣାଯାଉନାହିଁ । କଟକ ରେଭେନ୍ସା କଲେଜର କ୍ରମୋନ୍ନତି ଉତ୍ତମରୂପେ ସମ୍ଭବ । ବରଂ ନୂତନ ପ୍ରସ୍ତାବରେ ଅଧିକନ୍ତୁ ଶେଷୋକ୍ତ ବିଶ୍ୱବିଦ୍ୟାଳୟର କେନ୍ଦ୍ର ହେବ ବାଙ୍କିପୁର । ବାଙ୍କିପୁର ଅପେକ୍ଷା

କଲିକତା କଟକର କେବଳ ନିକଟବର୍ତ୍ତୀ ନୁହେ, ଅନ୍ୟାନ୍ୟ ନାନା ବିଷୟରେ ସୁବିଧାଜନକ । ନୂତନ ବିଶ୍ୱବିଦ୍ୟାଳୟରେ ସର୍ବୋତ୍ତମ କଲେଜ ହେବ "ବିହାରର କଲେଜ" । ଉକ୍ତ କଲେଜ ଅର୍ଥାତ୍ ବାଙ୍କିପୁରରେ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟ କଲେଜମାନଙ୍କ ଠାରୁ ଏହାର ଅନେକ ବିଷୟରେ ପାର୍ଥକ୍ୟ ରହିବ । କିନ୍ତୁ କଲିକତା ଅଧୀନରେ ଏହା ଘଟିବାର ଆଶଙ୍କା ନାହିଁ । ଯୋଗ୍ୟତା ଓ ପ୍ରତି-ଯୋଗିତାର୍ଥେ ପାଇଲେ ଏବଂ ସ୍ଥାନୀୟ ଆଗ୍ରହ ଉତ୍ସାହ ଅଧିକ ଦେଖାଗଲେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଅନ୍ୟାନ୍ୟ କଲେଜପରି କଟକ କଲେଜର କ୍ରମୋନ୍ନତି ସମ୍ଭବ ଏବଂ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ନୂତନ କଲେଜ ପ୍ରତି-ଷ୍ଠାର ସମ୍ଭାବନା ମଧ୍ୟ ଅଛି । ମାତ୍ର ପାଟଣା ବିଶ୍ୱବିଦ୍ୟାଳୟ ପ୍ରସ୍ତାବିତ ବ୍ୟବସ୍ଥାର ଅନ୍ୟପ୍ରକାର । ଲକ୍ଷେ ଉତ୍ସାହ ଓ ପ୍ରୟୋଜନ ହେଲେସୁଦ୍ଧା ଏ ବ୍ୟବସ୍ଥାଦ୍ୱାରା କଟକ କେବେ ବାଙ୍କିପୁରର ସୁଯୋଗ ପାଇବ ନାହିଁ । ଫଳରେ କଟକ କଲେଜ ବାଙ୍କି-ପୁର କଲେଜ ସଙ୍ଗେ ପ୍ରତିଯୋଗିତା କରିବାର ସୁଯୋଗ ସୁବିଧା କେବେ ପାଇବ ନାହିଁ । କେବଳ ଦୂରତାହେତୁ ନୁହେ, ଓଡ଼ିଆ ଛାତ୍ରମାନଙ୍କ ଦରିଦ୍ରତା ହେତୁ ସେମାନଙ୍କ ମଧ୍ୟରୁ କେହି ବାଙ୍କିପୁର ଯାଇ ପାରିବେନାହିଁ । ଫଳରେ ଏକ ପ୍ରଦେ-ଶରେ ଦୁଇ ଜାତିର ଶିକ୍ଷାର ବ୍ୟବସ୍ଥା ହେଲା ଏବଂ ବିଶ୍ୱବିଦ୍ୟାଳୟର ଉତ୍ତୀର୍ଣ୍ଣ ଛାତ୍ରମାନଙ୍କ ମଧ୍ୟରେ ସ୍ଥାନ ହେଲେ ଉଚ୍ଚ ନୀଚ ବିଚାର ଯେ ନହେବ ତାହା କିଏ କହିବ ? ବାଙ୍କିପୁରସ୍ଥ ବିଶ୍ୱବିଦ୍ୟାଳୟ ଉକ୍ତ କଲେଜମାନଙ୍କରୁ ଉତ୍ତୀର୍ଣ୍ଣ ବି, ଏ, ଉପାଧିଧାରୀ କଟକ କଲେଜର ବି, ଏ, ଉପାଧିଧାରୀ ଠାରୁ ଆପଣାକୁ ଉତ୍କୃଷ୍ଟତର ମଣିବା ସ୍ୱାଭାବିକ ଏବଂ ତଦନୁସାରେ ଲୋକ ମୂଲ୍ୟରେ ତାରତମ୍ୟ ରହିବା ମଧ୍ୟ ଖୁବ ସମ୍ଭବ । ନୂତନ ପ୍ରସ୍ତାବିତ ବିଧାନ ଅନୁସାରେ ଭବିଷ୍ୟତ କଲେଜମାନଙ୍କ ନିମନ୍ତେ ସୀମା ନିର୍ଦ୍ଦିଷ୍ଟ ହୋଇଅଛି । ଅର୍ଥାତ୍ କଟକ ସହରର ଏକମାଇଲ ଭିତରେ ନୂତନ କଲେଜ ହେବାର ହେବ, ନହେଲେ ତାହା ବିଶ୍ୱ-ବିଦ୍ୟାଳୟ ଦ୍ୱାରା ଗୃହୀତ ହେବନାହିଁ । ଭାରତୀୟ ବିଶ୍ୱବିଦ୍ୟାଳୟ ବିଧାନରେ ଏହା ଏକ ଅଭିନବ ନିୟମ । କର୍ତ୍ତାମାନେ ଏହାଦ୍ୱାରା ଭବିଷ୍ୟତରେ ଗୋଟିଏ ନୂତନ ଧରଣର ବିଶ୍ୱବିଦ୍ୟାଳୟ ସ୍ଥାପନ କରିବାର ଆଶା ରଖିଅଛନ୍ତି । ମାତ୍ର ଏପରି ଏକ ସ୍ଥାନରେ ଶିକ୍ଷାର କେନ୍ଦ୍ର ସୀମାବଦ୍ଧ ହୋଇ ରହିଲେ ଲୋକେ ଅପର କେତେ ବା ଶିକ୍ଷିତ ହେବେ ଏବଂ ଉଚ୍ଚଶିକ୍ଷା ପ୍ରତି ତାଙ୍କଙ୍କ ଆଗ୍ରହ ବଢ଼ିବ ଯେ ନୂତନ କଲେଜ ପ୍ରତିଷ୍ଠାର ପ୍ରୟୋଜନ ହେବ । ଏ ବିଧାନରେ ଅବଶ୍ୟ ବିହାରର କେତେ କ୍ଷତି ହେବନାହିଁ । ବିହାର ମୋଟରେ ସାତଗୋଟି କଲେଜ ପାଇବ-ଓଡ଼ିଶାରେ

ରହିବ ଗୋଟିଏ ମାତ୍ର । ଓଡ଼ିଶା ଭିତରେ ଅନ୍ତତଃ ମୋଗଲବନ୍ଦୀ ଓ ଗଡ଼ଜାତକୁ ହିସାବରେ ନେଉଅଛୁଁ । ଉଚ୍ଚ ଶିକ୍ଷା ସମ୍ବନ୍ଧେ ସେପରି ହିସାବ ଧରି-ବାକୁ ହେବ । କାହିଁକି ନା ଶାସନ ସମ୍ବନ୍ଧେ ଗଡ଼ଜାତ ରାଜ୍ୟମାନେ ପୃଥକ ହେଲେ ସୁଦ୍ଧା ଶିକ୍ଷା ବିଷୟରେ ରାଜନୈତିକ ଓଡ଼ିଶା ସହିତ ସେମାନଙ୍କର ସମ୍ପର୍କ ଅବଶ୍ୟ ରହିବ ଏବଂ ଅନ୍ୟଥା ସେମାନଙ୍କର ଶିକ୍ଷାର ସ୍ୱାତନ୍ତ୍ର୍ୟ ଅସମ୍ଭବ । ପୁଣି ଓଡ଼ିଶା ଗଡ଼ଜାତମାନଙ୍କ ନିମନ୍ତେ କେବେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସଂସ୍ଥାପନର ସମ୍ଭାବନା ନାହିଁ ଏବଂ ତାହା ମଧ୍ୟ ବାଞ୍ଛନୀୟ ନୁହେଁ । ପୁଣି ପ୍ରତ୍ୟେକ ଗଡ଼ଜାତ ରାଜ୍ୟ ଏପରି କ୍ଷୁଦ୍ର କ୍ଷୁଦ୍ର ଯେ ସେମାନେ ନିଜେ ନିଜେ ଗୋଟିଏ ଗୋଟିଏ କଲେଜ ଚଳାଇବା ଅସମ୍ଭବ—ଚଳାଇ ପାରିଲେ ବା ନୂତନ ବ୍ୟବସ୍ଥାନୁସାରେ ସେପରି କଲେଜ ସ୍ଥାପନର ଅଧିକାର ରହୁଛି କାହିଁ ? ଏ ସମସ୍ତ ଗଡ଼ଜାତ ରାଜ୍ୟମାନଙ୍କୁ ମିଶାଇ ଓଡ଼ିଶାର ଲୋକସଂଖ୍ୟା ବିହାର ଲୋକ ସଂଖ୍ୟା ସଙ୍ଗେ ସମାନ । ସମାନ ସଂଖ୍ୟକ ଲୋକମାନଙ୍କ ଶିକ୍ଷାଲାଭ ନିମିତ୍ତ ଯେତେବେଳେ ଏକ ପ୍ରାନ୍ତରେ ସାତୋଟି କଲେଜ ରହିବା ସ୍ଥଳେ, ଓଡ଼ିଶାରେ ଗୋଟିଏ ମାତ୍ର କଲେଜ ରହିବା ନ୍ୟାୟସଙ୍ଗତ ସୁବି-ଚାର ବୋଲି କହି ହେବ କାହିଁ । ଏ ପ୍ରସଙ୍ଗରେ ପୁଣି ଗଞ୍ଜାମ ଓ ଜୟପୁରର ବିଷୟ ବିଚାର କରିବା ଉଚିତ । ଗଞ୍ଜାମ ମାନ୍ଦ୍ରାଜରେ ଅଛି ସତ୍ୟ, ମାତ୍ର ଭାଷା, ସାହିତ୍ୟ, ସମାଜ, ଜାତି ଆଦି ସକଳ ବିଷୟରେ ଏହା ଓଡ଼ିଶା । ମାନ୍ଦ୍ରାଜ ସରକାର ଓଡ଼ିଆ ଭାଷାକୁ ସ୍ୱୀକାର କରିଅଛନ୍ତି । ଓଡ଼ିଆମାନଙ୍କର ଆପତ୍ତି ଆବେଦନ ଅନୁସାରେ ସେମାନ-ଙ୍କର ଶିକ୍ଷା ସମ୍ବନ୍ଧେ କେତେକ ସୁବିଧା କରି ଦେଉଅଛନ୍ତି । ମାତ୍ର ସେ ସବୁ ସୁବିଧା ମାନ୍ଦ୍ରାଜ ଅଧୀନରେ । ସୁତରାଂ ପୂର୍ଣ୍ଣାଙ୍ଗ ବା ଆଶାନୁରୂପ ଫଳ ହେବ କିପରି ? ରାଜନୈତିକ ଓଡ଼ିଶାରେ ଗଞ୍ଜାମ ଓଡ଼ିଆ ସେପରି ଭଲ ଭାବରେ ସୁବିଧା ପାଇଲାପରି ମନେକରେ, ମାନ୍ଦ୍ରାଜରେ ଏତେଦିନ ରହି ସୁଦ୍ଧା ସେପରି ସୁବିଧା ଅନୁଭବ କରିପାରୁନାହିଁ । ରେଳ ସମ୍ପର୍କ ହେବା ଦିନରୁ ଓଡ଼ିଶା ସ୍କୁଲ କଲେଜ-ମାନଙ୍କରେ ଗଞ୍ଜାମର ଛାତ୍ରସଂଖ୍ୟା ଦିନକୁଦିନ ବଢ଼ୁଅଛି । ଯାହାର କିଛିଏ ସୁବିଧା ଅଛି ସେ ଶିକ୍ଷା ନିମନ୍ତେ ଓଡ଼ିଶାକୁ ଚାଲି ଯାଉଅଛି । ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷା ନିମନ୍ତେ ଗଞ୍ଜାମ ଓଡ଼ିଆମାନେ ମାନ୍ଦ୍ରାଜକୁ ନ ଯାଇ ଓଡ଼ିଶାକୁ ଯିବା ଶ୍ରେୟସ୍କର ଓ ସୁବିଧାଜନକ ମନେ କରୁଅଛନ୍ତି । ଓଡ଼ିଶା ସହିତ ଏକଶାସନାଧୀନ ହେଉ ବା ନହେଉ ଶିକ୍ଷା ବିଷୟରେ ଗଞ୍ଜାମ ଓଡ଼ିଶା ସହିତ ଏକ ସୂତ୍ରରେ ଆବଦ୍ଧ ହୋଇ ରହିବାକୁ ହେବ । ବିଶେଷତଃ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥା ଭାରତୀୟ ସରକାରଙ୍କ

ବିଚାର ବିଷୟ ଥିବା ସ୍ଥଳେ ଭିନ୍ନ ଭିନ୍ନ ପ୍ରଦେଶର ଓଡ଼ିଆମାନଙ୍କ ସୁବିଧା ଅସୁବିଧା-ମାନ ଉପଯୁକ୍ତ ଭାବେ ବିବେଚିତ ହେବା ଉଚିତ । ଭାଷା ମୂଳରେ ପ୍ରଦେଶ ଗଠନ ନୀତି ସ୍ୱୀକୃତ ହେବା ସଙ୍ଗେ ସଙ୍ଗେ ସେହି ନୀତି ଅନୁସାରେ ବିଶ୍ୱବିଦ୍ୟାଳୟ ପ୍ରତି-ଷ୍ଠାର ଆବଶ୍ୟକତା ଅନେକେ ଉପଲବ୍ଧି କରୁଅଛନ୍ତି । ପାଟଣା ବିଶ୍ୱବିଦ୍ୟାଳୟ ଯେମିତି ମଧ୍ୟ ଭବିଷ୍ୟତରେ ଓଡ଼ିଆମାନଙ୍କ ନିମନ୍ତେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ହେବାର ଆଶା ହେଉଅଛନ୍ତି । ମାତ୍ର ନୂତନ ବ୍ୟବସ୍ଥା ଦେଖି ଏହି ଆଶା କେବଳ ଭୁଲ ହେଲା ବୋଲି ଆଶଙ୍କା ହେଉଅଛି । କଟକ କଲେଜ ଯାହା ଅଛି କେବଳ ସେହିପରି ତାହା ହିଁ ରହିବ—ଆଉ ଅଧିକ କିଛି ଉନ୍ନତ ହେବନାହିଁ । ପ୍ରସ୍ତାବିତ ଆଇନ ପାଣ୍ଡୁଲିପିରେ ଏପରି କିଛି ନଥିଲେ ମଧ୍ୟ ଆଇନପ୍ରବର୍ତ୍ତକ ମାନ୍ୟବର ଶଙ୍କର ନାୟରଙ୍କ ବକ୍ତୃତାରୁ ଏହା ଜଣାପଡୁଅଛି । ଆରମ୍ଭରୁ କଟକ କଲେଜର ଅବସ୍ଥା ଏପରି ହେଲେ ଭବିଷ୍ୟତରେ ତାକୁ ଧରି ବିଶ୍ୱବିଦ୍ୟାଳୟ ହେବ ବୋଲି ଆଶା ରଖିବା ବିଡ଼ମ୍ବନା ନୁହେଁକି ? ଏ ଆଶାର ସଫଳତା ଲାଗି ଆରମ୍ଭରୁ ଭିତ୍ତି ସ୍ଥାପିତ ହେବା ଉଚିତ । ଆମ୍ଭେମାନେ ଏହି ସମ୍ମିଳନୀ ମଞ୍ଚରୁ ବାରମ୍ବାର କଟକ କଲେଜରେ ଉଚ୍ଚ ଆଇନ ଶିକ୍ଷା, ଏମ୍, ଏ ଓ ଅନ୍ୟାନ୍ୟ ଉଚ୍ଚ ବିଷୟମାନଙ୍କରେ ଶିକ୍ଷାର ପ୍ରୟୋଜନୀୟତା ଉପଲବ୍ଧି କରି ମନୋଗତ ଭାବ ବ୍ୟକ୍ତ କରିଅଛୁଁ । ଅଦ୍ୟାପି ସେ ଅଭାବମାନ ପୂରଣ ହୋଇ ନାହିଁ । ମାନ୍ୟବର ଶଙ୍କର ନାୟରଙ୍କ ବକ୍ତବ୍ୟରୁ ସେ ଅଭାବମାନ ପୂରଣ ହେବ କି ନାହିଁ ସନ୍ଦେହ । ଏ ଅବ-ସ୍ଥାରେ ଓଡ଼ିଆମାନେ ଭବିଷ୍ୟତରେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପାଇବାର ଆଶାରେ କିପରି ଆଶ୍ୱସ୍ତ ହୋଇ ରହିବେ ? କଟକ କଲେଜକୁ ଶୀଘ୍ର ସମସ୍ତ ବିଷୟରେ ପୂର୍ଣ୍ଣାଙ୍ଗ ନ କଲେ ଓଡ଼ିଆମାନଙ୍କ ପ୍ରତି ଅନ୍ୟାୟ ହେବ ଏବଂ ଭବିଷ୍ୟତରେ ଓଡ଼ିଶାରେ ଅଧିକ କଲେଜ ସ୍ଥାପନର ବ୍ୟବସ୍ଥା ନ ରହିଲେ ଓଡ଼ିଆମାନଙ୍କର ଉଚ୍ଚ ଶିକ୍ଷା ଚିରଦିନ ସୀମାବଦ୍ଧ ହୋଇ ରହିବ । ନୂତନ ବିଶ୍ୱବିଦ୍ୟାଳୟ ପ୍ରସ୍ତାବରେ ବୈଜ୍ଞାନିକ ଶିକ୍ଷା ନିମନ୍ତେ କୌଣସି ପ୍ରକାର ବ୍ୟବସ୍ଥା ନାହିଁ । ଆଜିସୁଦ୍ଧା ଓଡ଼ିଆ-ମାନଙ୍କ ମଧ୍ୟରେ ଡାକ୍ତର ଇଞ୍ଜିନିୟରଙ୍କ ସଂଖ୍ୟା ଅଙ୍ଗୁଳି ରେଖାରେ ଗଣାଯାଇ ପାରେ । ଆଜିଯାଏ ଓଡ଼ିଶାରେ ସେପରି ଶିକ୍ଷାର ବ୍ୟବସ୍ଥା ନ ଥିବା ସେଥିର କାରଣ । ନୂତନ ଶାସନରେ ଓଡ଼ିଶା ବିଶେଷ ମନୋଯୋଗ ପାଇବ, ସୁତରାଂ ଶିକ୍ଷା ବିଷୟରେ ଉନ୍ନତି କରିବ ବୋଲି ଅନେକେ ଆଶା ରଖିଥିଲେ । ମୂଳରୁ ପ୍ରସ୍ତା-ବିତ ବିଶ୍ୱବିଦ୍ୟାଳୟରେ ଏ ବିଷୟରେ କୌଣସି ବ୍ୟବସ୍ଥା ରହୁ ନାହିଁ । ବୈଜ୍ଞା-ନିକ ଓ ଶିଳ୍ପ ଶିକ୍ଷା ନିମନ୍ତେ କଲେଜ କଥା ବାଦ୍ ଦେଲେ ମଧ୍ୟ ଓଡ଼ିଶାରେ ସେ

ସମ୍ବନ୍ଧୀୟ ସ୍କୁଲମାନ ଅଦୌ ନାହିଁ, କହିଲେ ଚଳେ । ଓଡ଼ିଶାରେ ଇଞ୍ଜିନି-ୟରିଂ, କୃଷି ଓ ଅନ୍ୟାନ୍ୟ ପ୍ରକାର ଶିଳ୍ପଶିକ୍ଷା [illegible] କେବଳ ମାଟ୍ରିକୁଲେସନ ଏଫ୍, ଏ ବି ଏ ପାସ ବଳରେ ଅନ୍ନସଂସ୍ଥାନର ବ୍ୟବସ୍ଥା କରିବାକୁ ହେଲେ କେବଳ ଓଡ଼ିଆ ଯୁବକମାନଙ୍କର ଭବିଷ୍ୟତ ବଡ଼ ଅଶାନ୍ତିଜନକ ହେବ । ବିଭିନ୍ନ ବିଷୟରେ ଏପରି ମାର୍ଗ ଉନ୍ମୁକ୍ତ ରହିବା ଉଚିତ ଯେ ଯାହାର ରୁଚି ଓ ସାମର୍ଥ୍ୟ ଅନୁସାରେ ଶିକ୍ଷା ଲାଭ କରି ପାରିବେ । ସମସ୍ତଙ୍କୁ ଗୋଟିଏ ବାଟରେ ଚଳାଇବା ଯୁକ୍ତି-ଅନୁମୋଦିତ ନୁହେଁ ତଥା ଅର୍ଥର ହିସାବରେ ଦେଖିଲେ ଦେଶପକ୍ଷରେ ଲାଭଜନକ ମଧ୍ୟ ନୁହେଁ ।

## ଶିକ୍ଷା ପ୍ରସଙ୍ଗ ।

ଶିକ୍ଷା ପ୍ରସଙ୍ଗରେ ପ୍ରାଥମିକ ଶିକ୍ଷାର ପ୍ରୟୋଜନ ମଧ୍ୟ ଅତୀବ ଆବଶ୍ୟକ । ଭାରତର ମଧ୍ୟ ଦେଶରେ ପ୍ରାଥମିକ ଶିକ୍ଷାର ବହୁଳ ପ୍ରଚାରର ଆବଶ୍ୟକତା ସ୍ୱୀକାର କରୁଅଛନ୍ତି । ଏକ ହିସାବରେ ଦେଖିଲେ ଦେଶର ଉନ୍ନତି ନିମନ୍ତେ ଉଚ୍ଚ ଶିକ୍ଷା ଯେପରି ଆବଶ୍ୟକ ପ୍ରାଥମିକ ଶିକ୍ଷା ମଧ୍ୟ ସେପରି ବା ତତୋଽଧିକ ପ୍ରୟୋଜନ । ଜନସାଧାରଣ ଶିକ୍ଷିତ ନ ହେଲେ ଶାସନ ପକ୍ଷେ ସୁବିଧା ନୁହେଁ ତଥା ଲୋକଙ୍କ ପକ୍ଷେ କଲ୍ୟାଣକର ନୁହେଁ । ଅନେକ ସମୟରେ ଏପରି ଶୁଣିବାକୁ ପାଉ ଥାଉଁ କି ଓଡ଼ିଶାର ସାକ୍ଷରଙ୍କ ସଂଖ୍ୟା ଅନ୍ୟାନ୍ୟ ଅନେକ ପ୍ରଦେଶର ସାକ୍ଷର ବ୍ୟକ୍ତିଙ୍କ ସଂଖ୍ୟା ତୁଳନାରେ ଅଧିକ । ଏହାର କାରଣ ଅଛି । ମାତ୍ର ସେ କାରଣ ଦୂର ହୋଇ ଆସୁଅଛି । ଫଳରେ ଓଡ଼ିଆମାନଙ୍କ ମଧ୍ୟରେ ସାକ୍ଷର ସଂଖ୍ୟା ଏଣିକି ଊଣା ହେବ । କାରଣ ଏହି—ପୂର୍ବେ ପ୍ରତିଗ୍ରାମରେ ଚଟଶାଳୀ ଥିଲା । ଚଟଶାଳୀ ସ୍ଥାପନ ନିମନ୍ତେ ଲୋକଙ୍କୁ ବେଶି କିଛି ବ୍ୟୟ ବହନ କରିବାକୁ ପଡ଼ୁ ନ ଥିଲା । ଆଧୁନିକ ଶିକ୍ଷା ପ୍ରଣାଳୀ ବଡ଼ ବ୍ୟୟସାପେକ୍ଷ । ସ୍କୁଲ ଘର ଆକାରଠାରୁ ଆରମ୍ଭ କରି ପିଲାଙ୍କର ପୋଷାକ ପର୍ଯ୍ୟନ୍ତ ସବୁଥିରେ କଟକଣା । ବସ୍ତୁତଃ ଏ ସବୁ ବିଷୟ ସେ ପାଳନୀୟ-ନୁହେଁ ତାହା କହାଯାଉ ନାହିଁ । କିନ୍ତୁ ଲୋକଙ୍କର ବର୍ତ୍ତମାନଅବସ୍ଥାରେ ନିର-କ୍ଷରତା ଦୂର କରିବା ସକାଶେ ସୁଲଭ ସୁଗମ ପନ୍ଥା ଅବଲମ୍ବନୀୟ । ଯେଉଁ ଶିକ୍ଷା-ପ୍ରଣାଳୀ ଜାତିର ପ୍ରକୃତିର ଅନୁରୂପ ନୁହେଁ ତାହା କାର୍ଯ୍ୟକାରୀ ହେବା କଠିନ । ପୂର୍ବେ ଚଟଶାଳୀମାନଙ୍କରେ ଯେଉଁ ପ୍ରକାର ଗଣିତାଦି ଶିକ୍ଷା ଦିଆଯାଉ ଥିଲା ବା ସାଧାରଣ ପାଠ ପଢ଼ା ହେଉଥିଲା ତାହା ଏତେବେଳେ ଉପଯୋଗୀ ନ ହେଲେ ସୁଦ୍ଧା, ସେ ସବୁ ପ୍ରତି ଲୋକଙ୍କର ଗୋଟିଏ ମମତା ଉଦ୍ରେକ ହେଉଥିଲା ଏବ

ଛାତ୍ରମାନେ ଚାଟଶାଳୀରୁ ଉତ୍ତୀର୍ଣ୍ଣ ହୋଇ ରାଜ୍ୟର ଅବଶ୍ୟକୀୟ ଲେଖା ପଢ଼ା କରି ପାରୁଥିଲେ । ସେହି ଚାଟଶାଳୀରୁ ବାହାରିବା ଲୋକେ ବ୍ୟବହାର କ୍ଷେତ୍ର ଜମି ଜରିପ, ହିସାବ ରକ୍ଷା ଇତ୍ୟାଦି ଏବଂ ପୁରାଣ ପାଠଠାରୁ ଆରମ୍ଭ କରି ଚିଠି ଲେଖା ଲେଖି ପତ୍ର ନଥି, ଅବଶ୍ୟକୀୟ କାର୍ଯ୍ୟ ସୁଚାରୁରୂପେ କରିପାରୁଥିଲେ । ବର୍ତ୍ତମାନ ଶିକ୍ଷାପ୍ରଣାଳୀଦ୍ୱାରା ଛାତ୍ରମାନେ କେବଳ ପରୀକ୍ଷାଗତ ସଫଳ ଜୀବନର ମଧୁର ସ୍ୱାଦ ପାଉଅଛନ୍ତି ଏବଂ ବ୍ୟବସାୟ ଉପଯୋଗୀ ଜ୍ଞାନ ଉପାର୍ଜନ କରି ପାରୁ ନାହାନ୍ତି । ଅନେକ ସ୍ଥାନରେ ଛାତ୍ରମାନେ ପୈତୃକ ପରିଶ୍ରମ କରିବାକୁ ବା ପୂର୍ବ ଜାତିଗତ ବ୍ୟବସାୟରେ ହାତ ଦେବାକୁ ନୀଚ କାର୍ଯ୍ୟ ବୋଲି ମନେ କରୁଅଛନ୍ତି । ଦେଶର ଶିକ୍ଷା ପ୍ରଣାଳୀ ଉନ୍ନତପ୍ରକାର ନ ହେଲେ ଦେଶର ଅଜ୍ଞାନ ଦୂରିବ ନାହିଁ କିମ୍ବା ଶିକ୍ଷାର ପ୍ରସାର ହେବ ନାହିଁ । ପୂର୍ବେ ଲୋକେ ଚାଟଶାଳୀକୁ ପିଲାଙ୍କୁ ପଠାଇବାକୁ ଯେପରି ଶ୍ରଦ୍ଧା କରୁଥିଲେ ସେପରି ଶ୍ରଦ୍ଧା ବର୍ତ୍ତମାନ ନାହିଁ । ଅଛି କେବଳ ଶିକ୍ଷାଦ୍ୱାରା ଚାକିରି କରି ଅର୍ଥ ଉପାର୍ଜନ କରିବାର ଲାଳସା । ତଦୁପରି ଆମ୍ଭ ଉତ୍କଳଦେଶର କେତେ ଅଞ୍ଚଳରେ କୋମଳମତି ବାଳକମାନଙ୍କ ଶିକ୍ଷା ଅନ୍ୟ ଭାଷାଭାଷୀ ଓଡ଼ିଆ ଅନଭିଜ୍ଞ ଶିକ୍ଷକମାନଙ୍କ ହାତରେ ଅଛି । ଗଞ୍ଜାମ ଓ ଜୟପୁର ଅଞ୍ଚଳର ଓଡ଼ିଆ ବାଳକମାନେ ଅନେକ ସ୍ଥାନରେ ତେଲୁଗୁ ଶିକ୍ଷକମାନଙ୍କଠାରୁ ଓଡ଼ିଆ ଭାଷାରେ ଶିକ୍ଷା ପାଉଅଛନ୍ତି । ଏ ଶିକ୍ଷା ଯେ କିପରି ହେଉଥିବ ସହଜରେ ଅନୁମାନ କରାଯାଇ ପାରେ । ସିଂହଭୂମର ଓଡ଼ିଆ ଶିଶୁମାନେ ଓଡ଼ିଆ ଭାଷାରେ ପ୍ରାଥମିକ ଶିକ୍ଷା ପାଉ ନାହାନ୍ତି । କେହି ହିନ୍ଦିରେ କେହି ବା ବଙ୍ଗଳାରେ ପ୍ରାଥମିକ ପୁସ୍ତକମାନ ପଢ଼ୁଅଛନ୍ତି ।

## କଚେରୀ ଭାଷା ।

ସିଂହଭୂମର ବିଚାର ଅଦାଲତମାନଙ୍କରେ ଓଡ଼ିଆ ଭାଷା ବ୍ୟବହାର ନିମନ୍ତେ ସେ ଜିଲ୍ଲାର ଓଡ଼ିଆ ରାଜା, ଜମିଦାର ଓ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିମାନେ ପ୍ରାଦେଶିକ ସରକାରଙ୍କ ଠାରେ ଆବେଦନ କରିଥିଲେ । ସରକାର ସେ ଆବେଦନର କଥା ନାମଞ୍ଜୁର କରିଅଛନ୍ତି । ଶୁଣାଯାଏ ସରକାର କହୁଅଛନ୍ତି ଯେ ସିଂହଭୂମ କଚେରୀ ଭାଷାର ସଂଖ୍ୟା ବଢ଼ାଇବା ନିମନ୍ତେ କୌଣସି କାରଣ ଦେଖାଯାଉନାହିଁ । ଯେଉଁମାନେ କଷ୍ଟ ଅନୁଭବ କରୁଅଛନ୍ତି ସେମାନଙ୍କ ସ୍ୱାର୍ଥ ଯଥେଷ୍ଟ କାରଣ ବୋଲି ବିବେଚିତ ହେବାର ଉଚିତଥିଲା । କାରଣ ନାହିଁ କହିଲେ "ବଡ଼ଲୋକଙ୍କୁ ଉତ୍ତର ନାହିଁ" ଭାବରେ ଜନସାଧାରଣ ଅବଶ୍ୟ ନୀରବ ରହିବେ । ମାତ୍ର ଏହି ଉତ୍ତରରେ

ଅସୁବିଧା ଦୂରହେବ ନାହିଁ କିମ୍ବା କାରଣ ନାହିଁ ବୋଲି ସରକାର କହିବାମାତ୍ରେ ଯଥାର୍ଥରେ ଲୋକଙ୍କର କଷ୍ଟ ଓ ଅସୁବିଧାର ଯେ କାରଣ ଅଛି ତାହା ମଧ୍ୟ ଲୁଚିଯିବ ନାହିଁ । ସିଂହଭୂମରେ ଏକାଧିକ ଦେଶୀୟ ଭାଷା ଅଛି । ତହିଁସଙ୍ଗେ ଓଡ଼ିଆ ଭାଷାକୁ ଯୋଡ଼ିଥିଲେ ବିଶେଷ କିଛି ଅସୁବିଧା ହୋଇଥାନ୍ତା ବୋଲି ବୋଧ ହେଉନାହିଁ । ଅବଶ୍ୟ ଏ ବିଷୟରେ ସରକାରଙ୍କଠାରେ ବାରମ୍ବାର ଗୁହାରି ହେବ ଏବଂ ଆମ୍ଭର ବିଶ୍ୱାସ ସରକାର ଦିନେ ସିଂହଭୂମ ଓଡ଼ିଆମାନଙ୍କର ନ୍ୟାଯ୍ୟ ପ୍ରାର୍ଥନା ମଞ୍ଜୁର କରିବେ । କଚେରୀରେ ଓଡ଼ିଆ ଭାଷା ନ ଚଳୁଥିବାରୁ, ପ୍ରାଥମିକ ବିଦ୍ୟାଳୟମାନଙ୍କରେ ତାହାର ଶିକ୍ଷା ବୃଦ୍ଧି ବିଷୟରେ ଲୋକଙ୍କର ଏକାନ୍ତ ଇଚ୍ଛା ଥିଲେ ସୁଦ୍ଧା, ଜୀବନ କ୍ଷେତ୍ରରେ ତେତେ ଆବଶ୍ୟକତା ନ ଥିବା ହେତୁ ତହିଁପ୍ରତି ଅଗ୍ରାହ୍ୟ ନ ହେବା ବିଚିତ୍ର ନୁହେ । ଗଞ୍ଜାମ ଏବଂ ଜୟପୁର ଅଞ୍ଚଳର କୋର୍ଟ କଚେରିମାନଙ୍କରେ ତେଲୁଗୁ ଭାଷା ସଙ୍ଗେ ଓଡ଼ିଆର ବ୍ୟବହାର ନିମନ୍ତେ ସରକାରଙ୍କର ଆଦେଶ ଥିଲେ ସୁଦ୍ଧା ସ୍ଥାନୀୟ କର୍ମଚାରୀମାନଙ୍କର ଅନେକ ସ୍ଥାନରେ ଅନାଦର ଏବଂ ସ୍ୱାର୍ଥପରତା ହେତୁ କାର୍ଯ୍ୟରେ ଓଡ଼ିଆ ଭାଷାର ଯଥୋଚିତ ବ୍ୟବହାର ହୋଇପାରୁନାହିଁ ଏବଂ ଏହାର ଫଳରେ ଓଡ଼ିଆ ଶିକ୍ଷାରେ ବାଧା ଘଟୁଅଛି ।

ଯେ ଯାହାର ମାତୃଭାଷା ବ୍ୟବହାର କରିବାରେ ସରକାରଙ୍କର କୌଣସି ଆପତ୍ତି ନାହିଁ । ବରଂ ତାହା ହିଁ ତାଙ୍କର ଇଚ୍ଛା । ଅନେକ ସ୍ଥଳରେ ସେଥିପାଇଁ ସରକାର ଉତ୍ସାହ ଦେଉଅଛନ୍ତି । ପଣ୍ଡିତ ଶ୍ରୀ ଗୋପୀନାଥ ନନ୍ଦଙ୍କ 'ଶବ୍ଦତତ୍ତ୍ୱବୋଧ' ଉତ୍କଳାଭିଧାନ ଛପାଇବା ନିମନ୍ତେ ମାନ୍ଦ୍ରାଜ ଓ ବିହାର-ଓଡ଼ିଶାର ପ୍ରାଦେଶିକ ସରକାରମାନେ ଯେ ସାହାଯ୍ୟ ଦେଉଅଛନ୍ତି ତାହା ଏହି ଉତ୍ସାହର ଅନ୍ୟତମ ପ୍ରମାଣ । ମାତ୍ର ଓଡ଼ିଆମାନେ ଦୁର୍ଭାଗ୍ୟବଶତଃ ଭିନ୍ନ ଭିନ୍ନ ହୋଇ ପଡ଼ିଥିବାରୁ ସେହି ସେହି ପ୍ରଦେଶର ଅନ୍ୟ ଜାତୀୟ ଅଧିବାସୀମାନଙ୍କ ଅଯଥା ଆତ୍ୟଧିକ ପ୍ରଭାବରେ ଓଡ଼ିଆ ଭାଷା ଉଠିଯାଇ ପାରୁନାହିଁ । ସେ ସବୁ ସ୍ଥାନରେ ଓଡ଼ିଆ ଭାଷା କିପରି ଅକ୍ଷୁଣ୍ଣ ରହିବ ଏବଂ ଉତ୍ତରୋତ୍ତର ଉନ୍ନତି କରିବ ସେଥିପାଇଁ ଓଡ଼ିଆ ଜନସାଧାରଣଙ୍କର ଯଥାଶକ୍ତି କାର୍ଯ୍ୟ କରିବା ବିଧେୟ । କହିବା ବାହୁଲ୍ୟ ଯେ ଓଡ଼ିଆ ଭାଷାର ଲୋପ ସଙ୍ଗେ ଓଡ଼ିଆ ଜାତିର ଲୋପ ହେବ ଏବଂ ଏହି ସେହି ଭାଷାବଳରେ ବିଚ୍ଛିନ୍ନ ଓଡ଼ିଆ ଜାତିର ଏକତ୍ୱ ରହିଅଛି । ଆମ୍ଭମାନଙ୍କର ଯତ୍ନ ଓ ଉଦ୍ୟମ ଦେଖିଲେ ସରକାର ଆମ୍ଭମାନଙ୍କର ସହାୟ ହେବେ, ଏଥିରେ ସନ୍ଦେହ ନାହିଁ । ଆମ୍ଭେ ଶୁଣି ସୁଖୀ ହୋଇଅଛୁଁ ଯେ ମାନ୍ୟବର ପଣ୍ଡିତ ଶ୍ରୀ ଗୋପବନ୍ଧୁ ଦାସ ମହାଶୟ ସିଂହଭୂମ ଜିଲ୍ଲାରେ ଓଡ଼ିଆ ଶିକ୍ଷା ବିଷୟରେ ଅନୁସନ୍ଧାନ କଲାବେଳେ ସେଠା

ଛୋଟନାଗପୁର କମିଶନର ପ୍ରଭୃତି କର୍ତ୍ତୃପକ୍ଷଙ୍କଠାରୁ ସହାନୁଭୂତି ପାଉଥିଲେ । ଲୋକ-ମାନଙ୍କ ଅନୁରୂପ କାର୍ଯ୍ୟ ତତ୍ପରତା ଦେଖିଲେ ଯେ କୌଣସି ସ୍ଥାନର କର୍ତ୍ତୃପକ୍ଷ-ମାନେ ସେଥିରେ ସହାନୁଭୂତି ଦେଖାଇବେ । ଗତବର୍ଷ ସମ୍ମିଳନୀରେ ରାଜନୈତିକ ଓଡ଼ିଶାର ବାହାରରେ ଥିବା ଓଡ଼ିଆ ଅଞ୍ଚଳମାନଙ୍କରେ ଓଡ଼ିଆ ଶିକ୍ଷାର ପ୍ରସାର ନିମନ୍ତେ ଗୋଟିଏ ସ୍ଥାୟୀ ଆନ୍ଦୋଳନ ହେବା କଥା ପଡ଼ିଥିଲା ଏବଂ ସମ୍ମିଳନୀ ମଣ୍ଡ-ପରେ ସଙ୍ଗେ୨ ଯଥାସାମାନ୍ୟ ଅର୍ଥ ସଂଗ୍ରହ ହୋଇଥିଲା । ସେହି ଆନ୍ଦୋଳନକୁ ଜୀବନ୍ତ ଓ ସୁଦୃଢ଼ କରିପାରିଥିଲେ ଏ ବର୍ଷକ ମଧ୍ୟରେ ଏ ଦିଗରେ କାର୍ଯ୍ୟ ଅନେକଦୂର ଅଗ୍ରସର ହୋଇପାରିଥାଆନ୍ତା । ସିଂହଭୂମପରି ଜୟପୁର ଅଞ୍ଚଳରେ ବା ମେଦିନୀପୁରରେ ଏପରି କାର୍ଯ୍ୟ ନିମନ୍ତେ ପ୍ରଶସ୍ତ କ୍ଷେତ୍ର ଅଛି । ସମ୍ମିଳନୀର ପ୍ରସ୍ତାବା-ନୁସାରେ ଓଡ଼ିଆ ଶିକ୍ଷା ପ୍ରସାର ସମ୍ବନ୍ଧେ ସେପରି ଶୃଙ୍ଖଳାବଦ୍ଧ ଭାବରେ ଉଦ୍ୟମ ହୋଇ ନ ଥିଲେ ସୁଦ୍ଧା ଗତବର୍ଷ ମଧ୍ୟରେ ମାନ୍ୟବର ଗୋପବନ୍ଧୁ ଦାସ ମହାଶୟ ସିଂହଭୂମରେ କାର୍ଯ୍ୟର ଯେଉଁ ସୂତ୍ରପାତ କରିଅଛନ୍ତି ସେ କାର୍ଯ୍ୟ କ୍ରମଶଃ କିପରି ସ୍ଥାୟୀଭାବରେ ଚାଲିବ ତାହାର ବ୍ୟବସ୍ଥା ଅନ୍ତତଃ ବର୍ଷକପରେ ଏ ସମ୍ମିଳନୀ ବେଳେ ହେବା ଉଚିତ ବୋଲି ମନେକରେ । ବଡ଼ ସୁଖର ବିଷୟ ଖରସ୍ୱାଁ ଏବଂ ସରେଇ-କଲା ଷ୍ଟେଟ୍ ଦ୍ୱୟର କଚେରିରେ ଓଡ଼ିଆ ଭାଷା ପ୍ରଚଳନ ସରକାର ମଞ୍ଜୁର କରି-ଅଛନ୍ତି ଏବଂ ଚକ୍ରଧରପୁରଠାରେ ଗୋପବନ୍ଧୁ ବାବୁଙ୍କ ଉଦ୍ୟମର ଫଳସ୍ୱରୂପ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଓ ଗୋଟିଏ ଭାଗବତ ମନ୍ଦିର ସ୍ଥାପିତ ହୋଇଅଛି ବୋଲି ସମ୍ବାଦ ପତ୍ରାଦିରୁ ଜଣାଯାଏ । ବର୍ତ୍ତମାନ ସିଂହଭୂମ ଓଡ଼ିଆମାନଙ୍କର ଜାଗ୍ରତ ହେବା ଆବଶ୍ୟକ । ଗଞ୍ଜାମବାସିମାନେ ନିଜଭାଷା ରକ୍ଷା କରିବାଲାଗି ବହୁବିଧ ଯତ୍ନ ଅନେକ ଦିନରୁ କରିଆସୁଅଛନ୍ତି ଏବଂ ସେହି ଯତ୍ନର ଫଳରେ ଘୁମୁସର ବିଭାଗରେ ଓଡ଼ିଆ ଏକମାତ୍ର କଚେରିଭାଷା ରୂପେ ଗୃହୀତ ହୋଇଅଛି । ଗଞ୍ଜାମର ଅନ୍ୟାନ୍ୟ ବିଶୁଦ୍ଧ ଓଡ଼ିଆଭାଷି ବିଭାଗ ଓ ତାଲୁକାମାନଙ୍କରେ ଏକମାତ୍ର ଓଡ଼ିଆ ପ୍ରଚଳନ ନ ହେବା-ଯାଏ ଓଡ଼ିଆ ଭାଷା ଓ ଶିକ୍ଷାର ସ୍ଥାନ ଦୃଢ଼ ହେଲା ବୋଲି କୁହାଯାଇପାରେ । ଅନ୍ୟ କୌଣସି ଗୋଟିଏ ବିଷୟରେ କେବଳ ଓଡ଼ିଆ ପ୍ରଚଳନ ନିମନ୍ତେ ଆଗାମୀ ବର୍ଷ ଗଞ୍ଜାମ ନେତୃବର୍ଗମାନଙ୍କର ମନୋଯୋଗ ସୀମାବଦ୍ଧ ରହିଲେ ବିଶେଷ ଉପକାରର ସମ୍ଭାବନା ଅଛି ।

## ସ୍ୱତନ୍ତ୍ର ଜିଲ୍ଲା ଗଠନ ।

ଏହାଛଡ଼ା ମାନ୍ଦ୍ରାଜ ପ୍ରଦେଶର ଓଡ଼ିଆମାନଙ୍କ ହିତ ନିମନ୍ତେ ଆଉ ଗୋଟିଏ ବିଷୟ ବିଚାରିବା ଶୀଘ୍ର ଆବଶ୍ୟକ । ବର୍ତ୍ତମାନ ଜୟପୁର ଅଞ୍ଚଳ ବିଶାଖା-

ପତ୍ତନ ଜିଲ୍ଲାର ଅନ୍ତର୍ଗତ ୮ [illegible] ଫଳ ୧୭ ହଜାର ବର୍ଗ ମାଇଲରୁ କେବଳ [illegible] ପ୍ରଦେଶ । ମହାରାଜା [illegible] ଓଡ଼ିଆ । ଆଦିମ ଅଧିବାସିମାନଙ୍କ ଛଡ଼ା ସେଠାର ଅନ୍ୟ ସମସ୍ତ ଅଧିବାସି ଓଡ଼ିଆ । ଆଦିମ ଅଧିବାସିମାନେ ପଡ଼ୋଶୀମାନଙ୍କ ସଂଶ୍ରବରେ କ୍ରମେ ଓଡ଼ିଆ ହେଉଅଛନ୍ତି । ସ୍ଥୂଳରେ କହିବାକୁ ଗଲେ ଏହି ସୁବିସ୍ତୀର୍ଣ୍ଣ ରାଜ୍ୟ ଓଡ଼ିଆଭାଷୀ ଗଞ୍ଜାମର ସ୍ୱାଭାବିକ ସମ୍ପ୍ରସାରଣ ମାତ୍ର । ବିଶାଖପତ୍ତନ ଜିଲ୍ଲାର ଅବଶିଷ୍ଟ ୬୦୦୦ ବର୍ଗ ମାଇଲ ଜୟପୁର ରାଜ୍ୟଠାରୁ ଦେଖିଲା ମାତ୍ରେ ପୃଥକ୍ ବୋଲି ଜଣାଯାଏ । ଅଧିବାସିମାନଙ୍କର ଜାତି ଓ ଭାଷା ପୃଥକ୍ । ପୁଣି ସରକାରଙ୍କର ବ୍ୟବସ୍ଥା ଓ ଶାସନନୀତି ମଧ୍ୟ ପୃଥକ୍ । ଜୟପୁର ବେ ଆଇନ ବା Non-regulated ମୁଲ୍କ । ଜୟପୁର ଛଡ଼ା ଜିଲ୍ଲାର ଅବଶିଷ୍ଟାଂଶର ଆଇନ କାନୁନ ଭିନ୍ନ ପ୍ରକାର । ଏତିକି ନୁହେଁ, ଜୟପୁର ନିମନ୍ତେ ଜିଲ୍ଲା ବୋର୍ଡ୍, ପୋଲିସ ଓ ଫରେଷ୍ଟ ଇତ୍ୟାଦିର ବନ୍ଦୋବସ୍ତ ସ୍ୱତନ୍ତ୍ର । ଅବଶିଷ୍ଟ ୬ ହଜାର ବର୍ଗ ମାଇଲରେ ଏ ସବୁର ବନ୍ଦୋବସ୍ତ ଅନ୍ୟ ରକମର । ଏହିପରି ଦୁଇଗୋଟି ଅସମାନ ଭାଗକୁ ଏକାଠାରେ ଯୋଡ଼ି ଏଡ଼େବଡ଼ ବିଶାଳ ଜିଲ୍ଲା ଗଢ଼ା ବା ଶାସନ ପକ୍ଷେ ସୁବିଧା ବୋଲି ବୋଧ ହେଉନାହିଁ । ପୁଣି ଏହି ଦୁଇ ଭାଗର ଅଧିବାସିମାନଙ୍କୁ ଏକତ୍ର ଆବଦ୍ଧ ରଖିବା ଉଭୟପକ୍ଷେ ହିତକର ନୁହେଁ । ତେଣୁ ଜୟପୁର ଏଜେନ୍ସିକୁ ଗୋଟିଏ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ କରିଦେବା ଶ୍ରେୟସ୍କର । କ୍ଷେତ୍ରଫଳ ଓ ଲୋକସଂଖ୍ୟା ଅନୁପାତରେ ଜୟପୁର ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ହେବା ପକ୍ଷେ କୌଣସି ଆପତ୍ତି ଥାଇ ନ ପାରେ । ପୁଣି ବିଶାଖପାଟଣାର ଅବଶିଷ୍ଟ ୬ ହଜାର ବର୍ଗ ମାଇଲ ସଙ୍ଗେ ଗଞ୍ଜାମର ଖାଣ୍ଟି ତେଲୁଗୁ ତାଲୁକା ଦୁଇ—ନାଉପଡ଼ା ପେଣ୍ଟ ଓ ଶ୍ରୀକାକୁଳ—ମିଶାଇଲେ ହେଲେ ବିଶାଖପତ୍ତନ ଜିଲ୍ଲା ଗୋଟିଏ ପୂର୍ଣ୍ଣାଙ୍ଗ ତେଲୁଗୁ ଜିଲ୍ଲା ହୋଇ ରହିବ । ଏହି ସାମାନ୍ୟ ପରିବର୍ତ୍ତନ ପରିବର୍ଦ୍ଧନ ଫଳରେ ମାନ୍ଦ୍ରାଜ ଅଞ୍ଚଳରେ ଓଡ଼ିଆଙ୍କର ଦୁଇଗୋଟି ପୃଥକ୍ ଜିଲ୍ଲା ରହିବ ଏବଂ ଗଞ୍ଜାମର ସ୍ୱଳ୍ପ ଖାଣ୍ଟି ତେଲୁଗୁ ଅଞ୍ଚଳ ବିଶାଖପତ୍ତନରେ ଅଧିକ ସୁବିଧା ଓ ସମ୍ପଦ ପାଇବ । ଜୟପୁର ଗୋଟିଏ ପୃଥକ ଜିଲ୍ଲା ହୋଇ ରହିବାରେ ଶାସନ ପକ୍ଷେ କୌଣସି ଅସୁବିଧା ହେବ ବୋଲି ଆଶଙ୍କା ହେଉନାହିଁ । ଅତଏବ ଏହି ପ୍ରସ୍ତାବ ସରକାରଙ୍କଠାରେ ଆଗତ କରି ସେଥିନିମନ୍ତେ ଶୀଘ୍ର ଆବେଦନ ଆନ୍ଦୋଳନ କରିବା ଯୁକ୍ତିସଙ୍ଗତ ମନେକରେ । ମାନ୍ଦ୍ରାଜର ଓଡ଼ିଆମାନେ ଏହି ସ୍ୱଳ୍ପ ଅନୁଗ୍ରହ ପାଇଲେ ଅନେକ ଦୂର ଆଶ୍ୱସ୍ତ ହୁଅନ୍ତେ ସନ୍ଦେହ ନାହିଁ ।

## ବ୍ୟବସ୍ଥାପକସଭାରେ ଓଡ଼ିଆ ସଦସ୍ୟ ।

ଜୟପୁର ଜିଲ୍ଲା ଗଠନ ମାନ୍ଦ୍ରାଜ ସରକାରଙ୍କ ଇଚ୍ଛାର ବଶ୍ୟ । ସିଂହଭୂମରେ ଓଡ଼ିଆ ଚଳେଇ ରକ୍ଷା କରିବା ବିହାର ଓଡ଼ିଶା ପ୍ରାଦେଶିକ ସରକାରଙ୍କ ବିଚାର କଥା । ଚନ୍ଦ୍ରପୁର ଫୁଲଝର ପ୍ରଭୃତି ସ୍ଥାନର ସ୍କୁଲମାନଙ୍କରେ ଓଡ଼ିଆ ପ୍ରଚଳନ କରିବା ମଧ୍ୟପ୍ରଦେଶ ଶାସନ କର୍ତ୍ତୃପକ୍ଷଙ୍କ ବିଚାରାଧୀନ । ମେଦିନୀପୁର ଓଡ଼ିଆମାନଙ୍କର ଅଭାବ ଅଭିଯୋଗମାନ ବଙ୍ଗଳା ପ୍ରାଦେଶିକ ସରକାରଙ୍କ ବିଚାର୍ଯ୍ୟ । ଏହିପରି ବିଚ୍ଛିନ୍ନ ଓଡ଼ିଆ ଅଂଶମାନଙ୍କର ଦୁଃଖ ଗୁହାରିମାନ ସେ ସେ ଅଂଶର ଶାସନ କର୍ତ୍ତୃପକ୍ଷଙ୍କ ଇଚ୍ଛାର ବଶ୍ୟ ହେବା ହେତୁ କୌଣସିଠାରେ ଓଡ଼ିଆମାନେ ସେମାନଙ୍କର ଦାବୀ ଦୃଢ଼ଭାବରେ ଆଗତ କରିପାରୁନାହାନ୍ତି । ଓଡ଼ିଆମାନେ ବର୍ତ୍ତମାନ ଯେପରି ଭାବରେ ଅବସ୍ଥିତ ସେଥିରେ କୌଣସି ପ୍ରଦେଶରେ ସେମାନେ ଶକ୍ତିଶାଳୀ ହୋଇ ପ୍ରାଧାନ୍ୟ ଲାଭ କରିପାରିବା ସମ୍ଭବପର ନୁହେଁ । ଫଳରେ କୌଣସି ପ୍ରାଦେଶିକ ଗଭର୍ଣ୍ଣମେଣ୍ଟ ତାଙ୍କ ଅଧୀନସ୍ଥ ଅଳ୍ପ ସଂଖ୍ୟକ ଓ ଅପେକ୍ଷାକୃତ ଅନୁନ୍ନତ ଓଡ଼ିଆମାନଙ୍କ ଅଭାବ ଅସୁବିଧା ନିବାରଣ ପକ୍ଷେ ତେତେ ଆସ୍ଥାବାନ୍ ହେଉ ନାହାନ୍ତି । ଏଥିଲାଗି ଭାରତ ଗଭର୍ଣ୍ଣମେଣ୍ଟଙ୍କ ସଭରେ ସମସ୍ତ ଓଡ଼ିଆମାନଙ୍କ ପକ୍ଷରୁ ଜଣେ ସଭ୍ୟ ରହିବା ଆବଶ୍ୟକ । ସେ ଭିନ୍ନ ଭିନ୍ନ ପ୍ରଦେଶସ୍ଥ ଓଡ଼ିଆମାନଙ୍କ ଅଭାବ ଅସୁବିଧା, ଦୁଃଖ ଗୁହାରିମାନ ସେଠାରେ ଜଣାଇପାରିବେ । ଓଡ଼ିଆମାନଙ୍କ ମଧ୍ୟରୁ ଜଣେ ସ୍ୱତନ୍ତ୍ର ସଭ୍ୟ ଭାରତବ୍ୟବସ୍ଥାପକ ସଭାରେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ମନୋନୀତ ହୋଇ ନ ରହିଲେ ନିର୍ବାଚନ ବିଧାନ ଓଡ଼ିଆଙ୍କ ଭାଗରେ ପଡ଼ିବା ସହଜ ନୁହେଁ । ଅବଶ୍ୟ ଗତ ତିନିବର୍ଷ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ପ୍ରତିନିଧି ରୂପେ ଓଡ଼ିଶାର ପ୍ରାଣ ନେତା ମାନ୍ୟବର ମଧୁସୂଦନ ଦାସ ମହୋଦୟ ଯାଇଥିଲେ । ଏଥର ବିହାର ଓଡ଼ିଶାର ଜମିଦାରମାନଙ୍କ ପକ୍ଷରୁ ଓଡ଼ିଆ ଜମିଦାର "ଅଶାସ୍ତ୍ରୀ ଉତ୍କଳ ଆଶା କଣେର ପାଦପ" ମାନ୍ୟବର କନିକାର ରାଜା ମହୋଦୟ ଭାରତ ଗଭର୍ଣ୍ଣମେଣ୍ଟଙ୍କ ସଭାକୁ ନିର୍ବାଚିତ ହୋଇଅଛନ୍ତି । ଏହି ଘଟଣାରେ ବିହାରୀମାନଙ୍କର ଉଦାରତା ପ୍ରକାଶ ପାଇଅଛି । ମାତ୍ର ଭିନ୍ନ ଭିନ୍ନ ପ୍ରଦେଶରେ ଓଡ଼ିଆମାନଙ୍କ ସ୍ଥିତି ସେପରି ରହିଲେ ସବୁବେଳେ ଏ ସୁଯୋଗ ଘଟିବା କଦାପି ସମ୍ଭବ ନୁହେଁ । ଓଡ଼ିଆମାନଙ୍କୁ ଏକ ଶାସନାଧୀନରେ ନ ରଖିବାଯାଏ ସେମାନଙ୍କ ମଧ୍ୟରୁ ଜଣେ ପ୍ରତିନିଧି ଭାରତ ବ୍ୟବସ୍ଥାପକ ସଭାରେ ରହିବା ନ୍ୟାୟସଙ୍ଗତ ଏବଂ ଦୁର୍ବଳ ସମ୍ପ୍ରଦାୟର ସ୍ୱାର୍ଥରକ୍ଷା ନୀତିର ଅନୁକୂଳ ।

# ଲୁଣ ପୋକ୍ତାନ ।

ଆଜକାଲି ଭାରତର ସବୁଅଞ୍ଚଳରେ ଶିଳ୍ପ ବାଣିଜ୍ୟର ଉନ୍ନତି ନିମନ୍ତେ ବଡ଼ ଚହଳ ପଡ଼ିଛି । ଲୋକେ ବୁଝିଲେଣି ଯେ କେବଳ ସରକାରୀ ଚାକିରୀରେ ଏଣିକି ଆଉ କାମ ଚଳିବ ନାହିଁ । କ୍ରମେ ଶିକ୍ଷିତ ଲୋକେ ଦେଶରେ ଶିଳ୍ପବାଣିଜ୍ୟ କୃଷିର ଉନ୍ନତି ଆବଶ୍ୟକ ବୋଲି ହୃଦୟଙ୍ଗମ କରୁଅଛନ୍ତି ଏବଂ କେହି କେହି ମଧ୍ୟ ସେଥିରେ ଉଦ୍ୟମ ଆରମ୍ଭ କଲେଣି । ବିଶେଷତଃ ଇଉରୋପୀୟ ଯୁଦ୍ଧ ହେତୁ ବୈଦେଶିକ ଶିଳ୍ପଜାତ ପଦାର୍ଥମାନଙ୍କର ଆମଦାନି ଊଣା ହୋଇଯିବାରୁ ସ୍ୱଦେଶୀୟ ଶିଳ୍ପର ପ୍ରୟୋଜନୀୟତା ସରକାର ଉପଲବ୍ଧି କରୁଥିବାର ଜଣାଯାଏ Industrial commission ବସି ଭାରତର ଭିନ୍ନ ଭିନ୍ନ ଅଞ୍ଚଳର ଅବସ୍ଥା ଅନୁସନ୍ଧାନ କରୁଅଛନ୍ତି । ଏ ଅନୁସନ୍ଧାନ ଫଳ କେବେ ବାହାରିବ ଏବଂ ପରିଣାମ ଯେ କି ହେବ ତାହା ବର୍ତ୍ତମାନ କୁହାଯାଇ ନ ପାରେ । ତହିଁପ୍ରତି ଅପେକ୍ଷା ରଖିବା ନିଷ୍ପ୍ରୟୋଜନ । ବଡ଼ଆକାରରେ ହେଉ ବା ଛୋଟଭାବରେ ହେଉ ଶିଳ୍ପ ଅନୁଷ୍ଠାନ ଆରମ୍ଭ ନ ହେଲେ ଲକ୍ଷ ଲକ୍ଷ ଦରିଦ୍ର ଓଡ଼ିଆଙ୍କର ଅନ୍ନ ସଂସ୍ଥାନ ଅସମ୍ଭବ ହୋଇପଡ଼ିବ । ଓଡ଼ିଶାର ଏକ ଏଅଞ୍ଚଳରେ ମରୁଡ଼ି, ସେ ଅଞ୍ଚଳରେ ବନ୍ୟା । କାହିଁ ମଡ଼କ କାହିଁ ଦୁର୍ଭିକ୍ଷ କ୍ରମାଗତ ଲାଗିରହିଛି । ଓଡ଼ିଆମାନଙ୍କର ଶାରୀରିକ-ବଳ ଦିନକୁଦିନ ଊଣା ହୋଇ ଆସୁଅଛି । ପରିମିତ ଖାଦ୍ୟାଭାବ ଏଥିର କାରଣ । ନିଜ ନିଜ ଅଞ୍ଚଳରେ ଓଡ଼ିଆମାନଙ୍କୁ କାମ ମିଳୁନଥିବାରୁ ପ୍ରତିଦିନ ଘର ଗ୍ରାମ ଛାଡ଼ି ବହୁତ ସଂଖ୍ୟକ ଓଡ଼ିଆ ରେଙ୍ଗୁନ କଲିକତା ଆସାମ ପ୍ରଭୃତି ସ୍ଥାନକୁ ଯାଉଛନ୍ତି । ସେମାନଙ୍କ ପିଲା କୁଟୁମ୍ବ ଘରେ ଦାରୁଣ କଷ୍ଟ ଭୋଗୁଛନ୍ତି । ଦେଶରେ ସେମାନଙ୍କୁ କାମ ଦିଆଯାଇପାରିଲେ ସେମାନଙ୍କର ଉପକାର ହୁଅନ୍ତା ଏବଂ ଦେଶର ଆର୍ଥିକ ଅବସ୍ଥାର ଉନ୍ନତି ହୁଅନ୍ତା । ସରକାରଙ୍କ ସାହାଯ୍ୟରେ ଏ କ୍ଷେତ୍ରରେ ବହୁ କାର୍ଯ୍ୟ ହୋଇପାରେ । ଏହା ଓଡ଼ିଶାରେ କାହିଁକି ଭାରତରେ ମଧ୍ୟ ସରକାରୀ ସାହାଯ୍ୟରେ କୌଣସି ଗୁରୁତର ଉଦ୍ୟମ କୃତକାର୍ଯ୍ୟ ହେବା ସହଜ ନୁହେଁ । ଓଡ଼ିଶା ଉପକୂଳ ଲୁଣ ପୋକ୍ତାନ ନିମନ୍ତେ ପ୍ରଶସ୍ତ କ୍ଷେତ୍ର । ପ୍ରାୟ ୬୦ ବର୍ଷ ତଳେ ବାଲେଶ୍ୱର ସମୁଦ୍ର କୂଳରେ, ମଦରମ୍ପୁର ହରିଶପୁର ଏବଂ ଚିଲିକା କୂଳବର୍ତ୍ତୀ ସ୍ଥାନମାନଙ୍କରେ ଲୁଣ ଆମଦାନି ହେଉଥିଲା । ସେଥିରେ ଅନେକସହସ୍ର ଲୋକ ନିର୍ବାହ ହେଉଥିଲେ । ସମୁଦ୍ର କୂଳରେ ଅବସ୍ଥାନ ଓଡ଼ିଶାପକ୍ଷେ ଏକ ପ୍ରାକୃତିକ ସୁବିଧା । ଏ ସୁବିଧାର ଅପଚୟ ହେବା ଅତ୍ୟନ୍ତ ଆକ୍ଷେପର ବିଷୟ । ଲୁଣ ପୋକ୍ତାନ ବନ

ହେବା ଜନ୍ୟ ପାରିକୁଦ ମାଲୁଦ ଓ ଅନ୍ୟାନ୍ୟ ଲୁଣ ପୋକ୍ତାନ ହୋଇଥିବା ଅଞ୍ଚଳର ଲୋକମାନଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇଅଛି । ଘୋର ମଜୁରି ହେତୁ କୌଣସି ବର୍ଷ ଫସଲ ନଷ୍ଟ ହୋଇଗଲେ ସେମାନେ ଏକାବେଳେକେ ଉତ୍ସନ୍ନ ହୋଇଯାଉଅଛନ୍ତି । ବର୍ତ୍ତମାନ ପାରିକୁଦ ମାଲୁଦ ଅଞ୍ଚଳରେ ଅନ୍ନାଭାବ ଘଟିଥିବା ହେତୁ ଅନେକେ ସମ୍ବାଦପତ୍ରରୁ ଅବଗତ ଥିବେ । ପୁରୀର ବର୍ତ୍ତମାନ ମାଜିଷ୍ଟ୍ରେଟ ଲକ୍ଷୀନ ସାହେବ ଏହି ଅବସ୍ଥା ଦେଖି ସାଧାରଣ ଚାନ୍ଦା ଦ୍ୱାରା ଏବଂ ରିଲିଫ କାର୍ଯ୍ୟ ଖୋଲି ଅନ୍ନକଷ୍ଟ ପ୍ରଜାସାଧାରଣଙ୍କୁ ସାହାଯ୍ୟ କରୁଅଛନ୍ତି । କୃଷିହାନି ହେଲେ ଏଅଞ୍ଚଳର ଲୋକଙ୍କର ଅନ୍ୟ କୌଣସି ଉପାୟ ନାହିଁ କିମ୍ବା କାମ କରିବାକୁ ଅନ୍ୟ କିଛି ବ୍ୟବସାୟ ନାହିଁ । ଚିଲିକାରୁ ପାଣି ନଆଣି ଗଞ୍ଜାମର ହୁମା ନାମକ ସ୍ଥାନରେ ଲୁଣ ଆଦାୟ କରାଯାଉଅଛି । ଗଞ୍ଜାମର ଅନ୍ୟ ସ୍ଥାନମାନଙ୍କରେ ସ୍ୱଳ୍ପ ଓ ମୌପଡ଼ାଠାରେ ଲୁଣ ମରାଯାଉଅଛି । ଗଞ୍ଜାମର ଲୁଣ ଓଡ଼ିଶାକୁ ବିଶେଷ ପରିମାଣରେ ରପ୍ତାନି ହେଉଅଛି । ଓଡ଼ିଶାର ଉପକୂଳରେ ବିଶେଷତଃ ଚିଲିକା ପାଖରେ ଏହି ଲୁଣ ପୋକ୍ତାନ ବ୍ୟବସାୟର ପୁନରୁଦ୍ଧାର ହେଲେ ବିହାର ଓଡ଼ିଶା ସରକାରଙ୍କ ଅର୍ଥାଗମର ଯେପରି ଏକ ପନ୍ଥା ଖୋଲିବ ସେପରି ଶ୍ରମଜୀବୀମାନଙ୍କୁ ମଧ୍ୟ ମଜୁରି ମିଳିବ ।

## ସମୁଦ୍ର, ସୁବିଧା ।

ସମୁଦ୍ର ସନ୍ନିଧାନ ହେତୁ ଓଡ଼ିଶାରେ ଲୁଣ ପୋକ୍ତାନ ହେବା ଯେପରି ଆବଶ୍ୟକ ବାଣିଜ୍ୟ ନିମନ୍ତେ ବନ୍ଦର ଖୋଲିଯିବା ମଧ୍ୟ ସେପରି ବା ତତୋଽଧିକ ବାଞ୍ଛନୀୟ । ବିହାର—ଓଡ଼ିଶା ପ୍ରଦେଶ ଗଠନ ପ୍ରସ୍ତାବ ବେଳେ ଗଭର୍ଣ୍ଣମେଣ୍ଟ ଡେସ୍‌ପାଚରେ (De spatch) କହିଥିଲେ ଯେ ବିହାରକୁ ସମୁଦ୍ର ରାସ୍ତା ଯୋଗା-ଇବା ନିମନ୍ତେ ତା ସଙ୍ଗେ ଓଡ଼ିଶାକୁ ଯୋଡ଼ାଯିବା ଉଚିତ । ଓଡ଼ିଶାର ଦାନ-ଲାଭର ବିସ୍ତର କିଛି ନାହିଁ । ବିହାରର ଯହିଁରେ ଲାଭ ତାହାହିଁ ହେଲା । କିନ୍ତୁ ନାହିଁ ଏ ସମୁଦ୍ର ରାସ୍ତାଦ୍ୱାରା ବିହାର କୌଣସି ପ୍ରକାରେ ଉପକୃତ ହେବାରତ ଜଣାଗଲା ନାହିଁ ? ବିହାର ଉପକୃତ ହେବେ ଅବାନ୍ତର ଭାବରେ ଓଡ଼ିଶା ମଧ୍ୟ ଉପକୃତ ହୁଅନ୍ତା । ଚାନ୍ଦବାଲି ଓଡ଼ିଶାରେ ଏକ ପ୍ରସିଦ୍ଧ ବନ୍ଦର । ତାହାକୁ Harbour ବା ଜାହାଜର ସୁବିଧାଜନକ ଆଶ୍ରୟ ସ୍ଥଳ ଯୋଗାଇବା ବିଷୟରେ ବିହାର—ଓଡ଼ିଶା ବ୍ୟବସ୍ଥାପକ ସଭାରେ ପ୍ରଶ୍ନ ଉଠିଥିଲା । ସନ୍ତୋଷଜନକ ଉତ୍ତର ମିଳିନାହିଁ । କିମ୍ବା ଓଡ଼ିଶାର ଉପକୂଳର ଅନ୍ୟ କୌଣସି ସ୍ଥାନରେ ଉପଯୁକ୍ତ

ବନ୍ଦର ବା ହାରବର ଖୋଲାଯିବାର ଉଦ୍ୟମ ହେଉନାହିଁ । ସରକାରୀ ଜେଟି-ପାଖରେ ଲଗିରହେବୁ କେବଳ ସାମୟିକ କାର୍ଯ୍ୟ ଚଳାଇବା ସକାଶେ ହୋଇ-ଥିବା ବୋଲି ବିଶ୍ୱାସ କରାଯାଇ ନ ପାରେ । ବନ୍ଦର ଖୋଲିବାର କାର୍ଯ୍ୟରେ ଲୋକସାଧାରଣଙ୍କର କରିବାର କିଛି ନାହିଁ । ଗଞ୍ଜାମର ଡଉପଡ଼ାଠାରୁ ବାଲେ-ଶ୍ୱର ସୀମା ଶେଷପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଉପକୂଳରେ ହାବର କମରେ ଏକାଧିକ ଉପଯୁକ୍ତ ସ୍ଥାନ ମିଳିବ ବୋଲି ଆଶାକରାଯାଏ । ସେ ବିଷୟରେ ଅଧିକ ଯତ୍ନ ହେଲେ ପ୍ରାକୃତିକ ଅନ୍ତରାୟମାନ ସହଜରେ ଦୂର କରାଯାଇପାରେ । ବର୍ତ୍ତମାନ ସାମ୍ରାଜ୍ୟର ଦୁର୍ଦ୍ଦିନ । ଶ୍ରୁଥରେ ଅର୍ଥର ଟଣାଟଣି । ଏହା କୌଣସି ବ୍ୟୟସାଧ୍ୟ ଅନୁଷ୍ଠାନର ଦାବୀ କରିବାକୁ ଉପଯୁକ୍ତ ସମୟ ନୁହେଁ । ତଥାପି କଥାଟି ଲକ୍ଷିବା ଉଚିତ । ଅତଏବ ଯୁଦ୍ଧର ଅବସାନ ପରେ ସରକାର ଓଡ଼ିଶାର ପ୍ରାକୃତିକ ସୁବିଧାର ସଦ୍‌ବ୍ୟବହାର କରିବାକୁ ପ୍ରୟାସୀ ହେବେ ।

## ଉପସଂହାର ।

ଆମ୍ଭେମାନେ ଅନେକ ବିଷୟରେ ସରକାରଙ୍କ ଉପରେ ନିର୍ଭର କରୁଁ । ନିର୍ଭର ନ କଲେ ନ ଚଳେ । ମାତ୍ର ଆତ୍ମ-ନିର୍ଭରତା ସମସ୍ତ ଜାତୀୟ ଉନ୍ନତିର ମୂଳ । ତାହାର ଆତ୍ମଶକ୍ତି ହିଁ ଜାତୀୟଶକ୍ତି । ସେହି ଆତ୍ମଶକ୍ତିର ବିକାଶ ନ ହେଲେ ଜାତୀୟ ଜୀବନ ଲାଭ ହୋଇ ନ ପାରେ । ମୁଁ ପୂର୍ବରେ ଉପସ୍ଥିତ କେତେକ ପ୍ରସଙ୍ଗର ଆଲୋଚନା କରିଅଛି ମାତ୍ର । ବହୁ ଜାତୀୟ ଉନ୍ନତି ନିମନ୍ତେ ସହସ୍ର ପନ୍ଥା ଉନ୍ମୁକ୍ତ ରହିଅଛି । ଆମ୍ଭମାନଙ୍କର ନାନା ଦିଗରେ ଅସଂଖ୍ୟ ଅଭାବ ରହି-ଅଛି । ମୁଁ ପୂର୍ବେ କହିଅଛି ଆମ୍ଭମାନଙ୍କର ଶାରୀରିକ ବଳ ଦିନକୁଦିନ କ୍ଷୀଣ ହେଉଅଛି । ପଲ୍ଲୀଗ୍ରାମର ସ୍ୱାସ୍ଥ୍ୟ କ୍ରମେ ବିନଷ୍ଟ ହେଉଅଛି । ଲୋକମାନଙ୍କର ସରଳତା ଓ ଧର୍ମଭାବ କ୍ରମେ ଊଣା ହୋଇ ଆସୁଅଛି । କଳହ ବିବାଦ, ଦାବୀ ଦାବା ବଢ଼ୁଅଛି । ଅନ୍ନାଭାବ ଦିନକୁଦିନ ବେଶି ହେଉଅଛି । ଶିକ୍ଷା ପୂର୍ବ ଦେଶରେ ଅଧିକ ବଢ଼ିଥିଲେହେଁ, ତାହା କେବଳ ସରକାରୀ ଚାକିରି ଆଶାରେ । ଜ୍ଞାନ ପାଇଁ ଜ୍ଞାନା-ର୍ଜ୍ଜନର ପିପାସା ନାହିଁ । ଜାତୀୟ ସାହିତ୍ୟ ଉନ୍ନତି ନିମନ୍ତେ ବ୍ୟକ୍ତିଗତ ଭାବରେ ବା ଶୃଙ୍ଖଳାବଦ୍ଧ ଉପାୟରେ ବିଶେଷ ଉଦ୍ୟମ ନାହିଁ । ଯେ କ୍ଷୀଣ ଉଦ୍ୟମ ହେଉଅଛି ତାହା କୋଟିପ୍ରାଣ ଏକ ବିଶାଳ ଜାତି ପକ୍ଷରେ କିଛି ନୁହେ । ଶିକ୍ଷିତ ଓ ସାଧାରଣଙ୍କ ମଧ୍ୟରେ ମିଳନର ସୁଯୋଗ କ୍ରମେ କମୁଅଛି । ପ୍ରାଚୀନ ସମୟର ଅନୁଷ୍ଠାନ ଗୋଟିଏ ଗୋଟିଏ ଲୋପ ହୋଇ ଯାଉଅଛି । ଦେଶର ପୂର୍ବ ଶିଳ୍ପ ସବୁ ପ୍ରାୟ ମରିଗଲାଣି ।

ଏହିସବୁ ଅସଂଖ୍ୟ ଅସୁବିଧା ମଧ୍ୟରେ ଜାତୀୟ ଜୀବନ ଗଠନ ଘୋର ବିଡ଼ମ୍ବନାଜନକ ପ୍ରୟାସ ବୋଲି ମନେ ହେବା ସ୍ୱାଭାବିକ । କଟକ କଲେଜରେ କେବଳ ଏମ୍, ଏ, ବି, ଏଲ କ୍ଲାସ ହେଲେ, ସିଂହଭୂମ ଓ ଗଞ୍ଜାମ କଚେରିମାନଙ୍କରେ ଓଡ଼ିଆ ଭାଷା ଚଳିଲେ କିମ୍ବା ଜୟପୁର ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ହୋଇଗଲେ ଅମ୍ଭମାନଙ୍କର ଜାତୀୟ ଆକାଂକ୍ଷା ଯେ ପୂର୍ଣ୍ଣ ହେବ, ତାହା ନୁହେଁ । ଜାତୀୟ ଜୀବନ ଗଠନ ନିମନ୍ତେ ସହସ୍ର ପନ୍ଥାରେ ସହସ୍ର ପ୍ରକାର ଉଦ୍ୟମ କରିବାକୁ ହେବ । ଅନୁର୍ବର ଭୂମିର ଶସ୍ୟ, ଗ୍ରାମ୍ୟଚାହାଣୀର ସଂସ୍କାର ଓ ଗ୍ରାମ୍ୟ ପୁଷ୍କରିଣୀ ପଙ୍କୋଦ୍ଧାରଠାରୁ ଆରମ୍ଭ କରି ଧର୍ମ, ସମାଜ ଓ ସମାଜନୀତି ପ୍ରଭୃତି ବିସ୍ତୀର୍ଣ୍ଣ କ୍ଷେତ୍ରରେ ବିପୁଳ ଆନ୍ଦୋଳନ ପର୍ଯ୍ୟନ୍ତ ବହୁମୁଖୀ କ୍ରିୟା ଅନୁଷ୍ଠାନ କରିବାକୁ ହେବ । ଅମ୍ଭମାନଙ୍କର ଲୋଡ଼ା, କେବଳ ସହୃଦୟ ଆନ୍ତରିକ କର୍ମନିଷ୍ଠ ଦେଶସେବକ । ଜଣେ ଅନନ୍ତ ମିଶ୍ରେ କେବଳ ସମ୍ମିଳନୀ ଅଧିବେଶନର ଚାରି ଛଅ ମାସ ପୂର୍ବରୁ ଜିଲ୍ଲାର ଗ୍ରାମେ ଗ୍ରାମେ ଚହଳ ପକାଇଲେ ହେବନାହିଁ । ପ୍ରତ୍ୟକ୍ଷ, ଅପ୍ରତ୍ୟକ୍ଷ, ଓ ବହୁର ସର୍ବପ୍ରକାର କ୍ରିୟାରେ କର୍ମୀମାନଙ୍କୁ ଜୀବନବ୍ୟାପୀ ସାଧନା କରିବାକୁ ହେବ । ସମ୍ମିଳନୀର ତିନିଦିନର ଅଧିବେଶନରେ ଜାତି ସ୍ୱର୍ଗକୁ ଉଠିବ ନାହିଁ । ଏହା କେବଳ ଜାତିର ମିଳନ ମଣ୍ଡପ । ଏହିଠାରେ ପରସ୍ପର ସହିତ ଭାବ ବିନିମୟ କରି ମାତୃସେବା ନିମନ୍ତେ ଅନୁପ୍ରାଣିତ ହୋଇ ନବବର୍ଷରେ ପୁଣି କର୍ମୀମାନେ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିବେ ପ୍ରକୃତ ନିଷ୍ଠାପର କର୍ମୀ ସଂଖ୍ୟା ଦେଶରେ ବଢ଼ୁ । ମହାପ୍ରଭୁଙ୍କ ଜାତୀୟ କାର୍ଯ୍ୟରେ ଓଡ଼ିଆମାନେ ସେମାନଙ୍କର ଲକ୍ଷ୍ୟ ସାଧନ କରନ୍ତୁ । ଓଡ଼ିଆ ଜାତୀୟ ଜୀବନରେ ମଙ୍ଗଳମୟଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।

ଶ୍ରୀ ଶ୍ରୀନିବାସ ରାଜମଣି ରାଜଦେବ ।



ସଭାପତିଙ୍କ ସୁଦୀର୍ଘ ଜ୍ଞାନପୂର୍ଣ୍ଣ ଉପାଦେୟ ବକ୍ତୃତା ପରେ ନିମ୍ନ ପ୍ରକାରେ ସଙ୍ଗୀତ ହୋଇଥିଲା ।

## କୃଷ୍ଣବିଜୟ ଗୀତ ।

ରାଗ ଭୈରବୀ—ଝୁଲଣା ।

ଜୟ ଜୟ ରାଣୀ, ମେରୀ ମହାରାଣୀ
ଶ୍ରୀ ପଞ୍ଚମଜର୍ଜଙ୍କ ରାଜରତ୍ନମଣି । ଘୋଷା ।

ଉଚ୍ଚାର ବଦନେ ଉତ୍କଳ ସନ୍ତାନେ
ପୂରାଅ ଜଳଦ ଶ୍ରେଣୀ । ୧ ।

ସୁଯଶ ସୁକୀର୍ତ୍ତି ଧନ ମାନ ଶକ୍ତି
ବ୍ୟାପିଅଛୁ ଏ ଧରଣୀ
ତାଙ୍କ ସମ କେହୁ ଅନ୍ୟ ଦେଖା ନାହିଁ
ପ୍ରଜାଙ୍କ ମନୁଡ଼ମଣି । ୨ ।

ଦୟା ଦାନ ଗୁଣେ ନାହିଁ ବୈଭବନେ
ଉଭୟ ସମ୍ରାଜ ଖଣି ।
ସୁରେଶ ସମର ନୁହେଁ ଦୁର୍ବାର
ଉତ୍କଳ-ସନ୍ତାନେ ଜାଣି । ୩ ।

ମିଳିତ ସ୍ୱରର ଜୟ ଘୋଷଣାର
ଉଦ୍ଭ୍ରାନ୍ତ ହେଉନ ଟାଣି ।
ଈଶ୍ୱରେ ପ୍ରାର୍ଥନା ଶୁଭ ଭକ୍ତିମନା
କରନ୍ତୁ ମଙ୍ଗଳ ଧ୍ୱନି । ୪

ଶ୍ରୀ ଦୈତାରିପ୍ରସାଦ ଦାସ
ବି, ଏଲ

# ନିର୍ଦ୍ଧାରିତ ପ୍ରସ୍ତାବମାନ ।

## ପ୍ରଥମ ନିର୍ଦ୍ଧାରଣ ।

ଉପସ୍ଥିତ ମହାସମରରେ ବ୍ରିଟିଶରାଜାଙ୍କ ଅଚିର ବିଜୟ ନିମନ୍ତେ ବିଶ୍ୱପିତାଙ୍କ ନିକଟରେ ଏହି ସମ୍ମିଳନୀ ଆନ୍ତରିକ ଭକ୍ତିସହ ପ୍ରାର୍ଥନା କରନ୍ତି ।

ପ୍ରଃ ମହନ୍ତ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ
ଅଃ ରାୟ ଶ୍ରୀ ସୁଦାମଚରଣ ନାୟକ ବାହାଦୁର
ସଃ ଶ୍ରୀ ମଧୁସୂଦନ ପାଣିଗ୍ରାହୀ ବି, ଏ

ମହନ୍ତ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ କହିଲେ :—

ଆଜି ଯେଉଁ ପ୍ରସ୍ତାବ ଆଗତ ସେ ବିଷୟ ବଡ଼ କଷ୍ଟଦାୟକ, ମହାସମର ବଡ଼ ଭୀଷଣ । କେତେ ନୃଶଂସ ହତ୍ୟା ହେଉଅଛି ତାହାର ସଂଖ୍ୟା ନାହିଁ । ଆମ୍ଭମାନଙ୍କ ସମ୍ରାଟ ନ୍ୟାୟ ଓ ସତ୍ୟର ମର୍ଯ୍ୟାଦା ରକ୍ଷା ସକାଶେ ବନ୍ଧୁରାଜାଙ୍କ ସହିତ ଶାନ୍ତି ସୁଖ ନଷ୍ଟ କରୁଅଛନ୍ତି । ସେଥିପାଇଁ ଆମ୍ଭମାନଙ୍କର ଯାହା କର୍ତ୍ତବ୍ୟ ତାହା ସାମାନ୍ୟ ଅମ୍ଭେମାନେ କରୁଅଛୁଁ ଓ ଭବିଷ୍ୟତରେ କରିବୁଁ । ଯୁଦ୍ଧ କେତେକାଳ ସ୍ଥାୟୀ ହେବ ଏହା କାହାରି ଉପେକ୍ଷଣୀୟ ନୁହେଁ । ଈଶ୍ୱରଙ୍କ ରାଜ୍ୟର ଲୋକମାନେ ନିଷ୍ଠୁର ଅତ୍ୟାଚାରୀ ହସ୍ତରେ ପ୍ରାଣହରାଇବା ବଡ଼ ଦୁଃଖର ବିଷୟ । ଏ ଭୀଷଣ ଯୁଦ୍ଧର ଶୀଘ୍ର ସାଙ୍ଗହେବା ନିମନ୍ତେ ଓ ଅମ୍ଭମାନଙ୍କର ରାଜାଙ୍କର ଜୟଲାଗି ଈଶ୍ୱରଙ୍କୁ ପ୍ରାର୍ଥନା କରିବା ଅମ୍ଭମାନଙ୍କର କର୍ତ୍ତବ୍ୟ । ଏଥିପ୍ରତି ଈଶ୍ୱରଙ୍କର କରୁଣା ଦୃଷ୍ଟି ପଡ଼ୁ । ଈଶ୍ୱର କରୁଣାଦୃଷ୍ଟିରେ ଚାହିଁଲେ ଶୀଘ୍ର ଶାନ୍ତିବାଦ ଘୋଷଣ ହେବ ।

ଅମ୍ଭମାନଙ୍କ ଓଡ଼ିଶା ଯେ ଏ ଯୁଦ୍ଧରେ କ୍ଷତିଗ୍ରସ୍ତ ନ ହୋଇଅଛି ଏମନ୍ତ ନୁହେଁ । ଭାରତ ଉତ୍କଳ ଓ ବ୍ରିଟିଶ ଅଧିକାରାଧୀନ ସମସ୍ତ ପ୍ରଦେଶ ଓ ରାଜ୍ୟ କ୍ଷତିଗ୍ରସ୍ତ । ସ୍ୱଜନମାନେ, ଆପଣମାନେ ଦଣ୍ଡାୟମାନ ହୋଇ ରାଜାଙ୍କର ଶାନ୍ତି, ଦେଶ ଓ ରାଜ୍ୟର ଶାନ୍ତି ଲାଗି ପ୍ରାର୍ଥନା କରନ୍ତୁ । ଈଶ୍ୱର ଅମ୍ଭମାନଙ୍କର କରୁଣରୋଦନ ଶୁଣି ଅମ୍ଭମାନଙ୍କର ଦୁଃଖ ଦୂର କରିବେ ।

ରାୟବାହାଦୁର ଶ୍ରୀ ସୁଦାମଚରଣ ନାୟକ
ପୂର୍ବୋକ୍ତ ପ୍ରସ୍ତାବଟିକୁ ଅନୁମୋଦନ କରି କହିଲେ—

I have been called upon to support the proposal put forward by the Right Reverend Mahanta Maharaj of Radhakanta math of Puri. It is to pray

to God for a speedy conclusion of the war that is devastating not only Europe but the whole of the civilized world. In an assembly like this of Oriya people, both political and natural, a proposal like this is sure to be carried unanimously. It has the support of the entire population of Orissa. It is the first and foremost resolution and it is very significant with us Oriyas who are noted for the loyalty to the Throne, why, because we Oriyas had a glorious past of our own kings whom we owed allegiance and we therefore possess a tradition of loyalty towards the Throne of which we are justly proud and of which we make no demonstration. The tradition is that the Oriyas are loyal and law-abiding. Thank God, the evil that prevails and predominates in other parts of India has not reached to contaminate Orissa. Though unfortunately the India Defence Act has been extended to Balasore neither the acts, deeds nor conduct of the Oriyas made it in any way a necessary Imperial measure. It was the misdeeds of the misguided Bengalee youths which brought the halter to the nearest Oriya neck. But an Oriya is an Oriya. He is traditionally a Raj-Bhakta. He lives moves and has his being in Rajahs. There is a charm in the word " Raja ", it is fascinating to the Oriya mind. There are families which elevate the mind of the Oriyas. A Raja is always a Raja to every body. Objections have been raised in certain quarters for Chiefs to preside—even from Ganjam and other parts. Those who object or raise the cry are ignorant or rather innocent of the Oriya mind that the word Raja has a charm and fascination to the Oriya. The Oriyas want that their Chiefs should co-operate with them. They have been from generation to generation taught to be loyal. Their Chiefs always command their respect irrespective of their position. Loyalty is the Oriya's Dharma ( ଧର୍ମ ). It is therefore natural for them to be loyal to His Majesty the King Emperor. The war has not only stirred the vitality of Europe but the rest of the world outside

Europe. The British Raj is fighting against a power which has been devouring and devastating the whole of Christendom and her inter-alies. Highly cultured Germany was seeking for time, and opportunity, and both came within her reach and both will have an end and an ignoble end no doubt. We have been praying to God for the last two years but from what we read in papers matters are becoming more and I more serious day by day. The Empire is striving hard to see German militarism crushed. Germany is the central power and her allies are only commandeered." Our British Raj is not behind hand, nor is lacking in powers. The German Emperor teaches to hate, others as his "Kultur" though he is a Defender of Christianity which teaches and preaches love. German Emperor in a prayer said "God has blessed us with 3rd year of war Christmas". Will this go on with him forever ? We feel that Germany will have a Napoleanic end, extraordinarily disastrous. Our King Emperor's empire is not affected muchless affected anywhere but our (King Emperor has stood as a defender of right against might) (truth against falsehood, Gabriel against Satan.) British Empire is sure to be crowned with success and it is our duty, that we as loyal subjects should pray for a speedy end of the war and success of the British arm.

ଶ୍ରୀ ମଧୁସୂଦନ ପାଣିଗ୍ରାହୀ ବି, ଏ, ପ୍ରସ୍ତାବଟିକୁ ସମର୍ଥନ କରି କହିଲେ ।

ପୃଥିବୀର ସର୍ବ ଧ୍ୱଂସକାରୀଙ୍କ ବିରୁଦ୍ଧରେ ଆମ୍ଭମାନଙ୍କର ସମ୍ରାଟଙ୍କର ବିଜୟଲାଗି ପ୍ରସ୍ତାବର ସମର୍ଥନ ଭାର ମୋ ଉପରେ । ବ୍ରିଟିଶ ସାମ୍ରାଜ୍ୟ ସଙ୍ଗେ ଭାରତ ଏପରିଭାବରେ ଜଡ଼ିତ ଯେ ଭାରତକୁ ଏଥିମଧ୍ୟରେ ଯୁଦ୍ଧର ଭୀଷଣତା ଅନେକଭାବରୁ ହୃଦୟଙ୍ଗମ କରିବାକୁ ପଡ଼ିଲାଣି । ପଣ୍ୟଦ୍ରବ୍ୟର ମୂଲ୍ୟ ବୃଦ୍ଧି, ଧନ ଓ ପ୍ରାଣରେ ଲୁଠାସ୍ୱାଦ । ଇଂରାଜସମ୍ରାଟ ଇଚ୍ଛାଦ୍ୱାରା ଏ ମହା ପ୍ରଳୟଙ୍କର ସମୟରେ ଅବତୀର୍ଣ୍ଣ ହୋଇ ନାହାନ୍ତି । କେବଳ ସମଗ୍ର ମନୁଷ୍ୟଜାତି ପ୍ରତି କର୍ତ୍ତବ୍ୟପାଳନ ସଜ୍ଞାନେ କ୍ରୂର ଜର୍ମାନୀର ଦୁର୍ବାର ଲାଲସା ବିରୁଦ୍ଧରେ ଏ ଯୁଦ୍ଧ ଘୋଷଣାର ପ୍ରୟୋଜନ ହେଲା । ଯେତେବେଳେ ବର୍ବର ଜର୍ମାନୀ ବେଲଜିୟମ ଧ୍ୱଂସ କଲା ଯେତେବେଳେ ଫରାସ ସ୍ୱାତନ୍ତ୍ର୍ୟଲୋପର ଆଶଙ୍କା ହେଲା ସେତେବେଳେ ସଭ୍ୟ ଇଂଲଣ୍ଡ ଶାନ୍ତ ପ୍ରଜାର

ଚେଷ୍ଟାଙ୍କର ବିଫଳ ହୋଇ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଏ ସମୟରେ ଇଂଲଣ୍ଡ ନୀରବ ରହିଥିଲେ ସେ ନିଜର ଅସ୍ତିତ୍ୱ ହରାଇଥାନ୍ତା; ଏହି ସମୟରେ କେବଳ ବ୍ରିଟେନ ନୁହେଁ ୟୁରୋପୀୟ ସମସ୍ତ ରାଜ୍ୟବୃନ୍ଦ ଲାଗିଛନ୍ତି—ଏହାର ଫଳସ୍ୱ-ରୂପରେ ବର୍ତ୍ତମାନ ଅନେକେ ହତ ଓ ଅସହାୟ ହେଲେଣି, ଅନେକେ ଆହତ ହେଲେଣି । ଏହି ସମର ଦିନକୁ ଦିନ ପ୍ରବଳତର ହେଉଅଛି ମାତ୍ର "ଯତୋ ଧର୍ମ ସ୍ତତୋ-ଜୟଃ" । ଆମ୍ଭମାନଙ୍କ ବ୍ରିଟିଶରାଜ ଜଗତର ଉପକାର ଧର୍ମ ଓ ଶାନ୍ତିରକ୍ଷା ଲାଗି ଏହି ପବିତ୍ର କାର୍ଯ୍ୟରେ ଯୋଗ ଦେଇଅଛନ୍ତି । ସେ ଅବଶ୍ୟ ଜୟୀ ହେବେ । ଏହି ଯୁଦ୍ଧରେ ପରିଣାମ ସମ୍ବନ୍ଧେ ଆଶଙ୍କା ନାହିଁ । ଆପଣମାନେ ଜାଣନ୍ତି ନୂତନ War cabinet ଇଂଲଣ୍ଡରେ ସ୍ଥାପିତ ଏହି ମନ୍ତ୍ରୀସଭାର ପ୍ରଧାନ ନାୟକ Lord George ଏହାଯୋଗୁଁ ଜର୍ମାନ ମନରେ ଘୋର ଆତଙ୍କ ; ଜର୍ମାନୀ ସନ୍ଧିପ୍ରସ୍ତାବ କରୁଅଛି । ଯେଉଁ ପର୍ଯ୍ୟନ୍ତ ଜର୍ମାନୀ ସ୍ୱକୃତ ଦୋଷର ଯଥେଷ୍ଟ ପ୍ରାୟଶ୍ଚିତ୍ତ କରୁନାହିଁ ସେ ପର୍ଯ୍ୟନ୍ତ ସନ୍ଧି ହେବାର କୌଣସି ସମ୍ଭାବନା ନାହିଁ । ୟୁରୋପୀୟ ସମରର କୁଫଳ ଆମ୍ଭେମାନେ କେତେ ଭୋଗି ନାହୁଁ । ବ୍ରିଟିଶ ଶାସନକର୍ତ୍ତାମାନେ ଆମ୍ଭ-ମାନଙ୍କୁ ଅଭୟ ଦେଉଅଛନ୍ତି । ଭାରତଭାଗ୍ୟ ତଥା ଓଡ଼ିଶାଭାଗ୍ୟ ଇଂରାଜ ଭାଗ୍ୟ ସଙ୍ଗେ ଜଡ଼ିତ । ବ୍ରିଟିନର ଜୟରେ ଓଡ଼ିଶା ଭାଗ୍ୟବାନ୍ ହେବାର ଆଶା କରି-ଅଛି । ଆମ୍ଭେମାନେ ଏକାନ୍ତଚିତ୍ତରେ ଈଶ୍ୱରଙ୍କୁ ପ୍ରାର୍ଥନା କରୁ ଯେପରି ବ୍ରିଟିଶରାଜ ଶୀଘ୍ର ଜୟୀ ହୋଇ ବିଜୟମୁକୁଟ ଧାରଣ କରୁ ।

ମହନ୍ତ ମହାରାଜ ଶ୍ରୀ ନରହରି ଦାସ କହିଲେ ।

ମହାଭାରତ ଯୁଦ୍ଧପରି ଏ ଯୁଦ୍ଧର ଉତ୍ପତ୍ତି । ଜର୍ମାନ ଅତ୍ୟାଚାର ହେତୁ ଆମ୍ଭ-ମାନଙ୍କର ମହାରାଜା ଯୁଦ୍ଧରେ ନିଯୁକ୍ତ, ଯାହାର ଉଦ୍ଦେଶ୍ୟ ପବିତ୍ର ସେ ଅବଶ୍ୟ କୃତକାର୍ଯ୍ୟ ହେବେ । ଯଦି ଅତ୍ୟାଚାର ହେଉଛି—ବର୍ତ୍ତମାନ ଅବଶ୍ୟ ଈଶ୍ୱର ଶାନ୍ତି ଘଟାଇବେ ।

୨ୟ ନିର୍ଦ୍ଧାରଣ ।

ଏହି ସମ୍ମିଳନୀ ଉତ୍କଳହିତୈଷୀ ବାମଣ୍ଡାଧିପତି ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଓ ରାୟ ବାହାଦୁର ସାମନ୍ତ ଶ୍ରୀ ରାଧାଚରଣ ଦାସଙ୍କ ଅକାଳମୃତ୍ୟୁରେ ଗଭୀର ଶୋକ ପ୍ରକାଶ କରୁଅଛନ୍ତି ।

ପ୍ରଃ । ଶ୍ରୀ ଫକୀରମୋହନ ସେନାପତି

ଅଃ । ମିଃ ଏ, ଏନ୍, ମିତ୍ର ବାରିଷ୍ଟର

ସଃ । ବାବୁ ଶ୍ରୀ ଶିବନାରାୟଣ ନାୟକ

ବିଷ କରି ଫକୀରମୋହନ ସର୍ଦ୍ଦାରଙ୍କ ପ୍ରସ୍ତାବ କରିବାକୁ ଯାଇ କହିଲେ ।

ଯେପରି ଲୋକ ମଲେ ଦାରୁଣ ଦୁଃଖ ହୁଏ ସେପରି ଦୁଇଟି ମହାତ୍ମା ଗତ-ବର୍ଷ ଉତ୍କଳରୁ ଚାଲିଗଲେ । ସେମାନଙ୍କ ନାମ ସ୍ମରଣ କରି ମୁଁ ଆପଣାକୁ ଧନ୍ୟ ମଣୁଛି । ବାମଣ୍ଡା ରାଜା—ଅବଶ୍ୟ ସେ ରାଜପୁରୁଷ ବୋଲି ସମ୍ମାନାସ୍ପଦ, ମାତ୍ର ଜନ-ସାଧାରଣରେ ଯୋଉଁ ଏ ଗୁଣ ସକାଶେ ମନୁଷ୍ୟ ବିଖ୍ୟାତ ହୁଅନ୍ତି । କିନ୍ତୁ ବାମଣ୍ଡା-ରାଜାଙ୍କଠାରେ ଅନେକ ଗୁଣ ଥିଲା; ମୁଁ ତାଙ୍କ ପିଲାଦିନୁ ତାଙ୍କୁ ଜାଣିଥିଲି । ସେ ସଂସ୍କୃତ ଓ ଉତ୍କଳଭାଷାରେ ଅସାଧାରଣ ପଣ୍ଡିତ ଥିଲେ । ସେ ବାକଖଣ୍ଡ ବହି ଲେଖିଅଛନ୍ତି । ଅନେକ ବଙ୍ଗୀୟ ମାସିକ ପତ୍ରିକାରେ ସେ ସମସ୍ତ ଆଲୋଚିତ ଓ ପ୍ରଶଂସିତ ହୋଇଅଛି । ସେ ବଡ଼ ଉଦ୍ଭିଜ୍ଜବିତ୍ ଥିଲେ । ସେ ବାମଣ୍ଡାରେ ଯେଉଁ ସେତୁ ନିର୍ମାଣ କରିଅଛନ୍ତି ତାହା ଯେ କୌଣସି ବଡ଼ ଉଦ୍ଭିଜ୍ଜବିତ୍‌ର ପକ୍ଷରେ ପ୍ରଶଂସାର ବିଷୟ ହୋଇଥାନ୍ତା; ତାଙ୍କର ଚନ୍ଦନ, କାଠ, ଲୁଗାହାଲରେ ଅନେକ ପାଲୁଣୀ ଓ ସାନ୍ତ୍ରୀମାନେ ନିଯୁକ୍ତ ଥାଇ ଜୀବିକା ନିର୍ବାହ କରନ୍ତି । ଉଦ୍ଭିଜ୍ଜବିତ୍ ଭୃତ୍ୟଥିଲେ ମଧ୍ୟ ସେ ନିଜେ ସର୍ବପ୍ରଧାନ ଉଦ୍ଭିଜ୍ଜବିତ୍‌ର କାର୍ଯ୍ୟ କରୁଥିଲେ, ବାମଣ୍ଡା, ବିଜ୍ଞାନ ଲାବେ ରେଟର ତାଙ୍କ ବିଜ୍ଞାନ ଅଭିଜ୍ଞତାର ଉଦାହରଣ । ଉତ୍କୋଚଗ୍ରହଣ ଇଂରାଜ ରାଜତ୍ୱରେ ବହୁ ସାବଧାନତା ସତ୍ତ୍ୱେ ଯାଇ ନାହିଁ, ମାତ୍ର ସେ ବଡ଼ ତତ୍ପରତା ସହିତ ତାହା ଦୂର କରି ଥିଲେ, ଜେଲ ଲୋକର ସଂଶୋଧନ ଲାଗି ସ୍ଥାପିତ ହୋଇଥିଲା । ଜେଲର ପଥ କି ସୁନ୍ଦର ସୁଶୃଙ୍ଖଳାର ବ୍ୟବସ୍ଥା କରିଅଛନ୍ତି । ସର୍ବଜୀବରେ ସମାନ ଦୃଷ୍ଟି ତାଙ୍କର ବିଶେଷତ୍ୱ ଥିଲା । Bamra is the pocket edition of France ବାମଣ୍ଡାରେ ଅବୈତନିକ ସ୍କୁଲ ହାଇ ଇଂରାଜୀ ସ୍କୁଲ ଓ ବାଳିକାସ୍କୁଲ ସ୍ଥାପନ ଓ ପରିପୋଷଣ ତାଙ୍କର ବିଦ୍ୟାନୁରାଗର ପରିଚୟ । ପ୍ରଜାସାଧାରଣଙ୍କୁ ବିଦ୍ୱାନ କରାଇବା ସକାଶେ ସେ ବିଶେଷ ଚେଷ୍ଟା କରିଅଛନ୍ତି । ତାଙ୍କ ପରି ପରିଶ୍ରମୀ ଲୋକ ବିରଳ, ବାମଣ୍ଡାକୁ ଓଡ଼ିଶାର ଉଜ୍ଜୟିନୀ ବୋଲାଯାଇ ପାରେ । ସେଠାର କବି ଓ ସେଠାର ବାଦକମାନଙ୍କ କବିତା ସେଠାର ଉଜ୍ଜୟିନୀ ନାମ ସାର୍ଥକ କରୁଅଛି । ବିଦ୍ୟାର ଯଥେଷ୍ଟ ଆଦର ହେଉଥିଲା, ସବୁ ସ୍ଥାନର ପଣ୍ଡିତମାନେ ପୁରସ୍କାର ପାଉଥିଲେ । ସବୁଠାରେ ସେ ମୁକ୍ତହସ୍ତ ଥିଲେ । ତାଙ୍କୁ ହରାଇବା ଆମ୍ଭମାନଙ୍କ ପକ୍ଷେ ଦୁଃଖ ଓ ଆକ୍ଷେପର କଥା । ସେକ୍ସପିୟର କହିଅଛନ୍ତି ଅନେକ କଥା ପୃଥିବୀ ଓ ସ୍ୱର୍ଗରେ ଅଛି ତାହା ଦର୍ଶନଶାସ୍ତ୍ରରେ ନାହିଁ ।

ସ୍ୱର୍ଗୀୟ ରାଧାଚରଣ ଦାସ ସୁନ୍ଦର ଧନବନ୍ତ ଉତ୍ତମ ଲୋକ ଥିଲେ । ସେ ଅତି ଧାର୍ମିକ ବଣିକ ଓ ସୁଶୀଳ ଥିଲେ । ସେ ଅକାତରେ ଧନବ୍ୟୟ କରୁଥିଲେ । ତାଙ୍କ ଅକାଳମୃତ୍ୟୁରେ ବାଲେଶ୍ୱର କ୍ଷତିଗ୍ରସ୍ତ ହୋଇ ଅଛି ।

ବାଉଷ୍ଣବ ମିଶ୍ର କହିଲେ ।

ବାମଣ୍ଡାରାଜା ଓ ସାମନ୍ତ ରାଧାଚରଣଙ୍କ ପରଲୋକରେ ଦୁଃଖପ୍ରକାଶ ପ୍ରସ୍ତାବ ମାନନୀୟ ଫକୀରମୋହନ ବାବୁ ଉପସ୍ଥିତ କରିଅଛନ୍ତି । ଅନୁମୋଦନର ଭାର ମୋ ଉପରେ । ଆମ୍ଭେମାନେ କାହିଁ ମୃତବ୍ୟକ୍ତିର ପ୍ରେତାତ୍ମାକୁ ସ୍ମରୁ । ଆମ୍ଭେମାନେ ଦୁଃଖିତ ହୋଇ ତାଙ୍କ ଆତ୍ମାର ଦୁଃଖବିଧାନ କରିବା ଉଚିତ ନୁହେଁ । ଗୁଣକୀର୍ତ୍ତନ ଆମ୍ଭମାନଙ୍କର ଅଭ୍ୟାସ । ଅନେକ ଲୋକ ମରନ୍ତି ମାତ୍ର ବାମଣ୍ଡା ଓ ରାଧାଚରଣ ମୃତ୍ୟୁରେ ଆମ୍ଭେମାନେ କାହିଁକି ଦୁଃଖ ପ୍ରକାଶ କରୁଅଛୁ ? କାରଣ ସେମାନଙ୍କ ମୃତ୍ୟୁରେ ଆମ୍ଭେମାନେ ବିଶେଷ କ୍ଷତିଗ୍ରସ୍ତ । ବାମଣ୍ଡା ସଙ୍ଗେ କ୍ଷଣକପାଇଁ ଯେଉଁମାନେ ଆଳାପ କରିଅଛନ୍ତି ସେମାନେ ଏହି ବିଶ୍ୱାସ କରିଥିବେ ଯେ ପାଣ୍ଡିତ୍ୟ ଓ ରାଜାଙ୍କ ଏ ପ୍ରବାଦ ସବୁସ୍ଥଳରେ ପ୍ରଯୋଜ୍ୟ ନୁହେଁ । ବାମଣ୍ଡା ୫୨।୫୩ ବର୍ଷ ବଞ୍ଚିଥିଲେ । ଦୀର୍ଘଜୀବୀ ହୋଇଥିଲେ ଅନେକ ଦେଶହିତକର କାର୍ଯ୍ୟ କରିପାରିଥାନ୍ତେ । ସେ ଉପଯୁକ୍ତ ପିତାର ଉପଯୁକ୍ତ ପୁତ୍ର ଥିଲେ । ସେ ତାଙ୍କ ପିତାଙ୍କର ସ୍ଥାପିତ ରକ୍ଷାକରି ପିତୃଋଣ ଶୁଝିଅଛନ୍ତି ତାହା ନୁହେଁ ସେ ନିଜେ ୬୦ ମାଇଲ ବ୍ୟାପୀ ଡାକଡାଲ କରିଅଛନ୍ତି । ଯଦ୍ୟପି ଅନେକ ଅସୁବିଧାସତ୍ତ୍ୱେ ଓ ସେ ସମ୍ମିଳନୀରେ ଯୋଗ ଦେଇ ନ ଥିଲେ ତଥାପି ବସ୍ତ୍ରବୟନ ବିଦ୍ୟାଳୟ ସ୍ଥାପନଦ୍ୱାରା ସମ୍ମିଳନୀର ଉଦ୍ଦେଶ୍ୟକୁ ଆଂଶିକ କାର୍ଯ୍ୟରେ ପରିଣତ କରିବାକୁ ସାହାଯ୍ୟ କରିଥିଲେ । ବାଣିଜ୍ୟ ବ୍ୟବସାୟ ଲଜ୍ଜାଜନକ କାର୍ଯ୍ୟ ବୋଲି ମନେ କରୁ ନ ଥିଲେ । ବାଣିଜ୍ୟ ସମସ୍ତଙ୍କର କର୍ତ୍ତବ୍ୟ, ଏହି ଉପଦେଶ କେବଳ ଉଦାହରଣଦ୍ୱାରା ଶିକ୍ଷା ଦେଉଥିଲେ । ସେ ଜଣେ ଉଚ୍ଚଧରଣର କବି, ଚିତ୍ରକର ଓ ସୁପଣ୍ଡିତ ଥିଲେ । ଗାଙ୍ଗେୟ ବିଜୟ କାବ୍ୟ ତାଙ୍କ ଅକାଳ ବିୟୋଗରେ ଅସମ୍ପୂର୍ଣ୍ଣ ରହିଲା । ସେ ବଙ୍ଗ, ଉତ୍କଳ ଓ ମଧ୍ୟପ୍ରଦେଶରେ ସୁଜାର୍ଦ୍ଦ ଥିଲେ । ତାଙ୍କର ଗୁଣକୀର୍ତ୍ତନ କରିବା ଆମ୍ଭମାନଙ୍କର ଉଚିତ ।

ସାମନ୍ତ ରାଧାଚରଣ ଜଣେ ଧନୀ ଥିଲେ । ଧନ କେବଳ ଦାନ ସକାଶେ ଏକଥା ସେ ହୃଦୟଙ୍ଗମ କରିଥିଲେ । ତାଙ୍କର ଧନବ୍ୟୟ ବହୁମୁଖୀ ଥିଲା । ସଦାବ୍ରତ, ଡାକ୍ତରଖାନା ସ୍ଥାପନ, ଦରିଦ୍ରାଶ୍ରମ ସ୍ଥାପନ ଓ ସ୍ୱଦେଶୀ ଆନ୍ଦୋଳନ ପ୍ରଭୃତି ନାନା ସଦ୍ବ୍ୟୟରେ ତାଙ୍କର ଧନ ବ୍ୟୟିତ ହେଉଥିଲା । ଅଳ୍ପ ବୟସରେ ତାଙ୍କର

ବିୟୋଗ ଅବଶ୍ୟ ଶୋକାବହ, ଶ୍ରୀ ରାଧାଚରଣଙ୍କର ସଦ୍‌ଗୁଣ ଅନୁକରଣ କରିବା ସମସ୍ତଙ୍କର କର୍ତ୍ତବ୍ୟ, ଅତଏବ ମୁଁ ପ୍ରସ୍ତାବଟିକୁ ଅନ୍ତରରସହ ଅନୁମୋଦନ କରୁଅଛି ।

ବାବୁ ଶ୍ରୀ ଶିବନାରାୟଣ ନାୟକ କହିଲେ—ମୁଁ ବାମଣ୍ଡାଙ୍କ ସମ୍ବନ୍ଧେ ଅନଭିଜ୍ଞ ତେଣୁ ତାଙ୍କର ଗୁଣାବଳୀ ବିଷୟରେ ମୁଁ ବିଶେଷ କହିବାକୁ ଅକ୍ଷମ । ରାଧାଚରଣଙ୍କୁ ମୁଁ ତାଙ୍କ ବାଲ୍ୟକାଳରୁ ଜାଣେ, ସେ କର୍ମଯୋଗୀ, ଭଦ୍ର ଓ ଦେଶସେବକ ଥିଲେ । ତାଙ୍କର ସାହସରେ ବାଲେଶ୍ୱର ସମ୍ମିଳନୀକୁ ନିମନ୍ତ୍ରଣ କରିଥିଲେ । ସେ ରଥଯାତ୍ରାରେ ଯାତ୍ରୀମାନଙ୍କୁ ଗାଡ଼ିରେ ଚଢ଼ାଇ ଘୋଡ଼ାଧୂଳ ଦେଉଥିଲେ । ତାଙ୍କର ଜୀବନ, ରାଧାଗୋବିନ୍ଦ ତାଙ୍କୁ ଅନୁକରଣ କରି ଓଡ଼ିଶାକୁ ଧନ୍ୟକରନ୍ତୁ ।

ବାବୁ ରାମନାରାୟଣ ପ୍ରହରାଜ କହିଲେ—ଶଙ୍କର ମୋହନ ବାବୁଙ୍କ ପ୍ରସ୍ତାବ ଓ ବାରିଷ୍ଟର ମିଶ୍ରଙ୍କ ଅନୁମୋଦନପରେ ମୋର ସମର୍ଥନବାହୁଲ୍ୟ ମାତ୍ର । ଯେଉଁ ପୁଷ୍କରିଣୀରେ ପାଣି ପୂର୍ଣ୍ଣଥାଏ ତାହାର ନିଷ୍କାସନ ନକଲେ ପୋଖରୀର ବନ୍ଧ ଭାଙ୍ଗିଯାଏ । ସେହିପରି ଶୋକ ଓ ଖେଦ ଉପସ୍ଥିତରେ ପ୍ରଳାପ କଲେ ମନରେ ଶାନ୍ତି ଆସେ । ଶକୁନ୍ତଳାରେ କବିବର କାଳିଦାସ କହିଅଛନ୍ତି—"ପ୍ରିୟଜନଙ୍କୁ ଦୁଃଖ ବାଣ୍ଟିଦେଲେ ଦୁଃଖ ସହ୍ୟ ହୋଇଯାଏ" । ବାମଣ୍ଡା ଓ ରାଧାଚରଣ ମୃତ୍ୟୁରେ ଦୁଃଖ ଯାହା ବାଲେଶ୍ୱରବାସୀମାନେ ଏକା ସହିଥିଲେ ତାହା ଗଞ୍ଜାମ ଓ ସମ୍ବଲପୁର ପ୍ରଭୃତି ସ୍ଥାନର ଲୋକମାନେ ବାଣ୍ଟିନେଲେ ଆମ୍ଭେମାନେ ସନ୍ତୁଷ୍ଟହେବୁଁ । ଭାରତସମ୍ରାଟଙ୍କ କଲିକତା ପରିଦର୍ଶନ କାଳରେ ବାମଣ୍ଡା ରାଜାଙ୍କସହିତ ମୋର ସାକ୍ଷାତ୍ । କ୍ଷଣେ ତସ୍ୟ ଗୃହର ଦ୍ୱାରରେ ପଚାରି ବସ୍ତ୍ର ମାରୁଁ ଆମ୍ଭମାନଙ୍କୁ ପାଛୋଟି ନେବାକୁ ଉପସ୍ଥିତ । ସେ Oriya type writer ଆବିଷ୍କାର କରିଥିଲେ । ତାଙ୍କ ରଚନାରୁ ଭ୍ରମ ହୁଏ ଯେ ସେ କବିଦୂର୍ଯ୍ୟ ବଳଦେବଙ୍କ ଅବତାର ।

ରାଧାଚରଣ ବାବୁଙ୍କ ସମ୍ବନ୍ଧେ ମୋର ଅଭିଜ୍ଞତା ଅଧିକ । ଦୋଷବର୍ଜିତ ମଣିଷ ଅସମ୍ଭବ । ତେଣୁ ମନୁଷ୍ୟର ଗୁଣାବଳୀ ଆଲୋଚନା କରିବା କର୍ତ୍ତବ୍ୟ, ରାଧାଚରଣଙ୍କଠାରେ ଅସଂଖ୍ୟ ଗୁଣ ଥିଲା । ଗତ ବାଲେଶ୍ୱର ଅଧିବେଶନ କଥା ମୋର ମନେ ପଡୁଛି, ରାଧାଚରଣ ବାବୁ ସାଧାରଣ ସମ୍ମିଳନୀପାଇଁ ଅକ୍ଳାନ୍ତ ପରିଶ୍ରମ କରି ରାତ୍ରି ୧୦ ଟା ସମୟରେ ମୋ ଯେମିତି ପାଖରେ ଉପସ୍ଥିତଥିଲେ, ଏହା ତାହାଙ୍କ କଷ୍ଟ ସହିଷ୍ଣୁତାର ପରିଚୟ । ବ୍ରାହ୍ମଣମାନେ ଓପର ହୋଟେ ମାରନ୍ତି । ସ୍ୱରବରନାମ ମଧ୍ୟ ସେହିଷ । ତେଣୁ ଉଭୟେ ପଣି ଗୁଣ ଗ୍ରହଣ କରିବା ଉଚିତ । ଅତଏବ ଅନ୍ତରର ସହ ପ୍ରସ୍ତାବଟିକୁ ସମର୍ଥନ କରୁଅଛି ।

**ଜୟପୁର ନିର୍ଦ୍ଧାରଣ—**

ମାନ୍ଦ୍ରାଜ ଅନ୍ତର୍ଗତ ଜୟପୁର ଏଜେନ୍ସିକୁ ଗୋଟିଏ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ କରି ତହିଁରେ ଓଡ଼ିଆଭାଷା ପ୍ରଚଳନ କରିବା ନିତାନ୍ତ ଅବଶ୍ୟକୀୟ ବୋଲି ଏହି ସମ୍ମିଳନୀ ବିବେଚନା କରନ୍ତି ଏବଂ ଏଥିପ୍ରତି ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କ ମନୋଯୋଗ ଆକର୍ଷଣ କରନ୍ତି ।

ପ୍ରଃ । ଶ୍ରୀ ବିକ୍ରମଦେବ ବର୍ମ୍ମା ;—

ପ୍ରସ୍ତାବଟିକୁ ଦୁଇଭାଗରେ ବିଭକ୍ତ କଲେ ଯଥା—

( ୧ )ମାନ୍ଦ୍ରାଜ ଅନ୍ତର୍ଗତ ଜୟପୁର ଏଜେନ୍ସିକୁ ଗୋଟିଏ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ କରିବା

( ୨ ) ତହିଁରେ ଓଡ଼ିଆଭାଷା ପ୍ରଚଳନ ।

ଆପଣମାନେ ସଭାପତିଙ୍କ ବକ୍ତୃତାରୁ ଜାଣିଥିବେ ଜୟପୁରର କ୍ଷେତ୍ରଫଳ ୧୨୦୦୦ ବର୍ଗ ମାଇଲ । ଏଥିରୁ ଅର୍ଦ୍ଧେକାର ଭାଗ ୬୦୦୦ ବର୍ଗମାଇଲ, ଅବଶିଷ୍ଟ ୧୧୦୦୦ ବର୍ଗମାଇଲ ଜୟପୁର । ଏହା କୌଣସି ଏକସ୍ୱଜା ଦ୍ୱାରା ସୁଶାସିତ ନ ହେବା ହେତୁ ଏହା ଭିନ୍ନ ଜିଲ୍ଲାରେ ବିଭକ୍ତ ହୋଇଅଛି । P. W. D. Local Fund.' ବିଷୟ ମଧ୍ୟରେ ତାହା ପୃଥକ୍ ହୋଇଅଛି । କିନ୍ତୁ ସରକାରୀ ରାଜସ୍ୱ, ଫୌଜଦାରୀ ଓ ଅଦାଲତ ସମ୍ପର୍କୀୟ ବିଷୟରେ ଜୟପୁର ଭିଶାଖାପଟ୍ଟନ ଅନ୍ତର୍ଗତ । ସେଠାର ଶାସନକର୍ତ୍ତା ଜଣାଇଅଛନ୍ତି ଯେ ଜୟପୁର ଉପରୋକ୍ତ ବିଷୟରେ ଭିଶାଖାପଟ୍ଟନଠାରୁ ପୃଥକ୍ ହେବା ବାଞ୍ଛନୀୟ । ମାତ୍ର ଯୁଦ୍ଧ ହେତୁ ତାହା ସ୍ଥଗିତ ଅଛି । ଏହା ବୋଲି ଆମ୍ଭେମାନେ ଆବେଦନ କରିବା ନାହିଁ ଏ କଥା ନୁହେଁ, ଯେତେବେଳେ ଗଭର୍ଣ୍ଣମେଣ୍ଟ ଜେନେରାଲ ବିଷୟରେ ଜୟପୁରକୁ ପୃଥକ୍ କରି-ଥାଇନ୍ତି ସେତେବେଳେ ଆମ୍ଭେମାନେ ଆଶା କରୁଁ ଯେ ତାହାକୁ ସରକାର ସମ୍ପୂର୍ଣ୍ଣ-ରୂପେ ପୃଥକ୍ କରିଦେବେ । ତେଣୁ ଆବେଦନ ପଠାଇବାକୁ ହେବ ।

( ୨ ) ସେଠାରେ ଓଡ଼ିଆଭାଷା ପ୍ରଚଳନ କରିବା ।—ଜୟପୁରର ଲୋକେ ଅଧିକବାସୀ; ସେମାନଙ୍କ ଛଡ଼ା ସହସ୍ରେ ଓଡ଼ିଆ, ସେଠାରେ କେତେକ ତେଲଙ୍ଗି ଲୋକେ ବାସ କରନ୍ତି; ସେଠା ରାଜ୍ୟ ବା ରାଜା ଦରବାରରେ ତେଲଙ୍ଗି ପ୍ରଚଳିତ ନାହିଁ । ସେଠାକୁ ବିଜ୍ଞ ଉତ୍କଳୀ ଭାଇମାନେ ନ ଯିବାରୁ ତେଲଙ୍ଗାମାନେ ସେଠାରେ କର୍ମଚାରୀ ହୋଇଅଛନ୍ତି । ସେଠାରେ ଓଡ଼ିଆଭାଷା ପ୍ରଚଳିତ ହେବ ଉଚିତ । ଜୟପୁର ଗୋଟିଏ ଓଡ଼ିଆଜିଲ୍ଲା ହେବା ବିଚିତ୍ର ନୁହେଁ । ତେଣୁ ଏ ପ୍ରସ୍ତାବକୁ ମୁଁ ଆଗତ କଲି ।

ଶ୍ରୀ ସଦାନନ୍ଦ ମହାନ୍ତି, ବି, ଏଲ, ପ୍ରସ୍ତାବଟିକୁ ଅନୁମୋଦନ କରି କହିଲେ— ଭୌଗୋଳିକ ଓ ରାଜନୈତିକ ଅବସ୍ଥାନ ଅନୁସାରେ ପୃଥକ୍ ଜିଲାର ସମସ୍ତ ଉପାଦାନ ଜୟପୁରଠାରେ ବିଦ୍ୟମାନ ଅଛି । ସେଠାର ଜନସଂଖ୍ୟା, ଆୟ ଓ ଆୟତନ ଦେଖାଏ ଯେ ଏହା ଗୋଟିଏ ପୃଥକ୍ ଜିଲା ହେବା ଉଚିତ । ଗଞ୍ଜାମ ଓ ବିଶାଖାପଟଣାର ଯେଉଁ ଓଡ଼ିଆମାନେ ସେଠାରେ କାର୍ଯ୍ୟ କରୁଅଛନ୍ତି ସେମାନେ ବିଶ୍ୱାସ କରନ୍ତି ଯେ ଜୟପୁର ଗୋଟିଏ ସ୍ୱତନ୍ତ୍ର ଜିଲା ହେଲେ ସେଠାକାର ଓଡ଼ିଆମାନଙ୍କର ଉନ୍ନତି ହେବ । ଜଳ ସହିତରେ ତୈଳ ଯେପରି ମିଶି ନ ପାରେ ସେହିପରି ଓଡ଼ିଆମାନେ ତେଲିଙ୍ଗିମାନଙ୍କ ସଙ୍ଗେ ମିଶି କଦାପି ଏକ ଜାତି ହୋଇ ନ ପାରନ୍ତି । ଜୟପୁର ଭିନ୍ନ ଜିଲାରେ ପରିଣତ ହେଲେ ଆମ୍ଭମାନଙ୍କର ଅଶେଷ ଉପକାର ସାଧିତ ହେବ । ଓଡ଼ିଆଙ୍କ ଶରୀରର ରକ୍ତବିନ୍ଦୁ ଜୟପୁର ଓଡ଼ିଆଙ୍କ ଧମନୀରେ ପ୍ରବାହିତ । ସେମାନଙ୍କ ଲାଗି ସ୍ୱତନ୍ତ୍ର ଜିଲା ଗଠିତ ହେବା ଆବଶ୍ୟକ— ଯେହେତୁ ଓଡ଼ିଆ ଓ ଜୟପୁର ଓଡ଼ିଆଙ୍କ ଭାବ ଭାଷା ଏକ । ସେଠାରେ ସ୍ୱତନ୍ତ୍ର ଜିଲା ନ ଥିବାରୁ ସେଠାର ଭାଷା ଓ ଜାତୀୟ ଭାବ ବିଭାଗୋନ୍ମୁଖ, ଏହେତୁ ବନ୍ଧୁ ବିକ୍ରମଦେବ ଓଡ଼ିଆଙ୍କ ଟେକ୍ ରକ୍ଷା ନ ଥିଲେ ଓଡ଼ିଆ ସେଠାର ଦୃଷ୍ଟିରେ ରହି ନ ଥାନ୍ତା । ଜୟପୁର ମୁମୂର୍ଷୁ ମାତ୍ର ମୃତ ନୁହେଁ । ସେଠାରେ ଜାତୀୟ ଭାବ ଉଦ୍ରେକ ହେବା ଉଚିତ । ମୁଁ ହୃଦୟର ସହିତ ନିର୍ଦ୍ଧାରଣଟି ଅନୁମୋଦନ କରୁଅଛି ।

Mr. B N.Misra. ସମର୍ଥନ କରି କହିଲେ—

I beg to support this resolution in English It is not a new proposal. Lord Curzon proposed to bring Ganjam and Joypur to Orissa. This matter of Joypur Agency forms for police Govt. a separate department. Mr. Hanis's report for civil and criminal administration to form Joypur a separate District with Oriya as the court language. In area and population it is quite fit for a separate District. The subordinate Rajas are all Oriyas. Hence it ought to be an Oriya District. This resolution ought to reach the ears of the Madras Government.

୪ର୍ଥ ନିର୍ଦ୍ଧାରଣ—

ଓଡ଼ିଶା ଉପକୂଳରେ ସରକାରଙ୍କ ଲବଣଗୋଲାମାନ ଉଠାଇଦେବାଦ୍ୱାରା ଗରିବ ଉତ୍କଳବାସୀଙ୍କର ଏକ ପ୍ରଧାନ ଜୀବିକାର୍ଜ୍ଜନର ଉପାୟ ବନ୍ଦ

ହୋଇଯିବାରୁ ବର୍ତ୍ତମାନ ତାହା ପୁନଃ ପ୍ରଚଳନ ନିମନ୍ତେ ଭାରତୀୟ ଓ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କୁ ଏହି ସମ୍ମିଳନୀ ପ୍ରାର୍ଥନା କରନ୍ତି ।

ପ୍ରଃ —ମାନ୍ୟବର ଶ୍ରୀ ସୁରେନ୍ଦ୍ରନାରାୟଣ ଭଞ୍ଜ ଦେଓ ସାମନ୍ତ ଦେବ ଭଞ୍ଜ, କହିଲେ—

ଅସ୍ମାନଙ୍କର ଚେଷ୍ଟା କରିବା ଉଚିତ ଯେପରି ଏ ନିର୍ବାଚନ କାର୍ଯ୍ୟରେ ସଫଳ ହୁଏ । ଅନେକ ଦିନପୂର୍ବେ ଓଡ଼ିଶାର ଅନେକ ସ୍ଥାନରେ ଲୁଣପୋକ୍ତାନ ହେଉଥିଲା । ବଙ୍ଗଳାରେ ମଧ୍ୟ ଓଡ଼ିଶାଲୁଣ ଚଳୁଥିଲା, ଐତିହାସିକ ଷ୍ଟାର୍ଲିଙ୍ଗ-ସାହେବ କହନ୍ତି ଓଡ଼ିଶାର ଲୁଣ ଭାରତର ଅନ୍ୟାନ୍ୟ ସ୍ଥାନର ଲୁଣ ଅପେକ୍ଷା ଭଲ । ସରକାରବାହାଦୁର ଓଡ଼ିଶାର ଲବଣବିଭାଗରୁ ବାର୍ଷିକ ଟ ୧୮୦୦୦୦୦) ଅଠର-ଲକ୍ଷ ଟଙ୍କା ଆୟ କରୁଥିଲେ । ଓଡ଼ିଶାରେ ଦୁଇପ୍ରକାର ଲୁଣ ଉତ୍ପନ୍ନ ହେଉଥିଲା । ଯଥା—ପଙ୍ଗା ଓ କର୍କଚ—ରନ୍ଧା ବା ସୂର୍ଯ୍ୟକିରଣ ଉତ୍ତପ୍ତ । ତାହା ଅତେ ବର୍ଷକେ ୬ଲକ୍ଷ ମହଣ କର୍କଚଲୁଣ ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନ ଏକେବାରେ ଲବଣପୋକ୍ତାନ ବନ୍ଦ । ଓଡ଼ିଶାର ଲୋକସଂଖ୍ୟାର ଶତକଡ଼ା ୮୦ କୃଷିଜୀବୀ । ପ୍ରତ୍ୟେକ ତିନି ଚାରି ବର୍ଷରେ ଅତିବୃଷ୍ଟି ବା ଅନାବୃଷ୍ଟି ଯୋଗେ ଫସଲ ନଷ୍ଟ ହୋଇଯାଏ । କୃଷି ବ୍ୟତୀତ ଜୀବିକାର୍ଜ୍ଜନାର ଅନ୍ୟ ଉପାୟ ଉତ୍କଳରେ ନାହିଁ । କେବଳ ରେଙ୍ଗୁନ, କଲିକତା ଓ ଆସାମକୁ ଯାଇ କୁଲିକାର୍ଯ୍ୟ କରି କେତେକ ଓଡ଼ିଆ ଉଦର ପୂରଣ କରନ୍ତି କାରଣ ଓଡ଼ିଶାରେ ସେମାନେ କାର୍ଯ୍ୟ ପାଆନ୍ତିନାହିଁ ।

ଫସଲ ନଷ୍ଟପାତ ହେଲେ ପୂର୍ବେ ଲୋକମାନେ ଲୁଣ କରି ତାର ଲାଭରେ ଚଳୁଥିଲେ । ମାତ୍ର ବର୍ତ୍ତମାନ ଲୁଣପୋକ୍ତାନ ନ ହେବାରୁ ଅଶିକ୍ଷିତ ଲୋକମାନଙ୍କର ନାନା କାର୍ଯ୍ୟ ପାଇବାର ସୁବିଧା ନାହିଁ । ସମୁଦ୍ରକୂଳ ଲୁଣ ଉତ୍ପନ୍ନସ୍ଥାନରେ ଅନ୍ୟ ଶସ୍ୟ ହୁଏନାହିଁ । ତେଣୁ ଶସ୍ୟ ଜମିରେ କ୍ଷତି ହେବନାହିଁ । ଯେଉଁ ସମୟରେ ଲୁଣ ହୁଏ ସେତେବେଳେ ଶସ୍ୟକାମ ମଧ୍ୟ ନ ଥାଏ । ତେଣୁ ଏ ପ୍ରସ୍ତାବ ମୁଁ ସ୍ୱାଗତ କରୁଅଛି ।

ଅଃ—ଶ୍ରୀ ଭଗବାନ୍‌ଚରଣ ଦାସ ଜମିଦାର କହିଲେ ।—

ଓଡ଼ିଶାର ଅନ୍ୟାନ୍ୟ ସ୍ଥାନର ଲବଣପୋକ୍ତାନ ସମ୍ବନ୍ଧେ ମୋର ବ୍ୟକ୍ତିଗତ ଜ୍ଞାନ ନାହିଁ । ତେବେ ବାଲେଶ୍ୱରର ଲୁଣବ୍ୟବସାୟ ସମ୍ବନ୍ଧେ ମୁଁ ଅଭିଜ୍ଞ ଥିଲି । ବାଲେଶ୍ୱର ଲୁଣ ବଙ୍ଗଦେଶ ନିକଟବର୍ତ୍ତୀ ସକଳ ଜିଲ୍ଲାକୁ ଯାଉଥିଲା । ବଙ୍ଗଦେଶ ଓ ମଧ୍ୟପ୍ରଦେଶରେ ଏ ଲୁଣ ପ୍ରଚଳିତ ହେଉଥିଲା । ଏହି ଲୁଣପୋକ୍ତାନ

ଓ ବହନ ସକାଶେ ବାଲେଶ୍ୱର ଜିଲ୍ଲାର ପ୍ରାୟ ଅର୍ଦ୍ଧାଂଶ ଲୋକ କାମ ପାଉଥିଲେ । ତାହାର ପ୍ରସ୍ତୁତ କରିବାରେ କମାର, ବଢ଼ାଇ ଜୀବିକାନିର୍ବାହ କରୁଥିଲେ, ମାଝି-ମାଲସି ମଧ୍ୟ ଜୀବିକା ପାଉଥିଲେ, ମାତ୍ର ସେ ଲୁଣବ୍ୟବସାୟ ଉଠିଯିବାରୁ ବାଲେଶ୍ୱର ଲୋକେ ବଡ଼ କଷ୍ଟ ପାଉଅଛନ୍ତି । ଲୁଣପୋକ୍ତାନ ଉଠିଯିବାରୁ ଲୋକେ ଦରିଦ୍ର ହୋଇଅଛନ୍ତି । କନିକାରାଜା ଲୁଣପୋକ୍ତାନର ପୁନରୁଦ୍ଧାର ପାଇଁ ଅନେକ ଦିନରୁ ଚେଷ୍ଟା କରୁଥିବାରୁ ଅମ୍ଭମାନଙ୍କର ଧନ୍ୟବାଦାର୍ହ, ବାଲେଶ୍ୱରବାସୀମାନଙ୍କର ଏ କାର୍ଯ୍ୟ ସାଧନଲାଗି ଉଦ୍ଯୋଗ ଚେଷ୍ଟା କରିବା ଉଚିତ ।

ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ଓକିଲ ପ୍ରସ୍ତାବଟିକୁ ସମର୍ଥନ କରି କହିଲେ ।—

ଲୁଣ ଅମ୍ଭମାନଙ୍କର ଅତ୍ୟାବଶ୍ୟକୀୟ ବ୍ୟବହାର୍ଯ୍ୟ ତେଣୁ ଏହାର ବିଷୟ ଆଲୋଚନା ଆବଶ୍ୟକ । ଲୁଣପୋକ୍ତାନ କାହିଁକି ବନ୍ଦ ହେଲା ବର୍ତ୍ତମାନ ତାହା ଆଲୋଚ୍ୟ ନୁହେଁ । ପାରିକୁଦ ମାଲୁଦର ଲୋକମାନେ ଅନାବୃଷ୍ଟିଯୋଗୁଁ ଏ ବର୍ଷ ଅନ୍ନକଷ୍ଟ ପାଉଅଛନ୍ତି । ଲୋକପ୍ରିୟ ପୁରୀର କଲେକ୍ଟର ସାହେବ ସାଧାରଣ ଚାନ୍ଦାଦ୍ୱାରା ସେଠାରେ ଅନ୍ନଦାନର ସୁବିଧା କରିଅଛନ୍ତି । ସେଠାର ଲୋକଙ୍କ ଦୁରବସ୍ଥାର କାରଣ କର୍ତ୍ତୃପକ୍ଷ ବୁଝୁଛନ୍ତି—ତାହା ଲବଣପୋକ୍ତାନ ବନ୍ଦ । ସେମାନେ କୃଷି ଅପେକ୍ଷା ଲବଣପୋକ୍ତାନ ଅଧିକ ତର ଧନବାନ୍ ହେଉଥିଲେ । ବାଲେଶ୍ୱରର କଥା ଶୁଣିଛନ୍ତି । ପାରିକୁଦ ମାଲୁଦ ଦେଖିଲେ ବୁଝିବେ ଲୋକେ କି କଷ୍ଟରେ ପଡ଼ିଛନ୍ତି । ସରକାର ବାହାଦୁର Industrial Commission ବସାଇଅଛନ୍ତି । ଆଶା କରେଁ ଏ ସୁଯୋଗରେ ଏ ବିଷୟ Commission କୁ ଓ ସରକାରଙ୍କୁ ବୁଝାଇଦେଇପାରିଲେ ସରକାର ଅବଶ୍ୟ ଅମ୍ଭମାନଙ୍କର ଗୁହାର ଶୁଣିବେ । ତେଣୁ ପ୍ରସ୍ତାବଟିକୁ ଅନ୍ତରର ସହିତ ମୁଁ ସମର୍ଥନ କରୁଅଛି ।

ଶ୍ରୀଯୁକ୍ତ କାଲୁଚରଣ ଦାସ ଓକିଲ କହିଲେ —

ଆପଣମାନେ ଲୁଣପୋକ୍ତାନର ପୁନରୁଦ୍ଧାରର ଆବଶ୍ୟକତା ଶୁଣିଲେ । କାର୍ଯ୍ୟରେ କିପରି ପରିଣତ ହେବ ତାହା ଭାବିବା ଉଚିତ । କେବଳ ସରକାରଙ୍କ ଉପରେ ନିର୍ଭର କଲେ ଚଳିବ ନାହିଁ । ଆମ୍ଭେ ଅର୍ଦ୍ଧେକ ପଥ ଅଗ୍ରସର ହେଲେ ସେ ଆଉ ଅଧେ ସମ୍ଭାଳିଦେବେ । ଏହା ଏକାକ ଜଣକର କାର୍ଯ୍ୟ ବା ବାଲେଶ୍ୱର କାର୍ଯ୍ୟ-ନିର୍ବାହକ ସମିତିର କାର୍ଯ୍ୟ ନୁହେଁ, ଅମ୍ଭମାନଙ୍କର ସମ୍ମିଳିତ ଶକ୍ତି ନିୟୋଜିତ କରିବା ଉଚିତ, ଅମ୍ଭେମାନେ ସୌଭାଗ୍ୟକ୍ରମେ ମିଃ ମେହିଓର ସାହେବଙ୍କୁ ଓଡ଼ି-ଶାର କମିଶନରରୂପେ ପାଇଅଛୁଁ । ଚେଷ୍ଟା କଲେ ଅବଶ୍ୟ କାର୍ଯ୍ୟ ସଫଳ ହେବ ।

**୫ମ ନିର୍ଦ୍ଧାରଣ:—**

ପ୍ରାକୃତିକ ଓଡ଼ିଶାର ବୈଷୟିକ ଶିକ୍ଷାପ୍ରସାର ଉଦ୍ଦେଶ୍ୟରେ କଟକରେ ଗୋଟିଏ ଇଞ୍ଜିନିୟରିଂ ସ୍କୁଲ ପ୍ରତିଷ୍ଠିତ ହେବା ନିତାନ୍ତ ଆବଶ୍ୟକ ବୋଲି ସମ୍ମିଳନୀ ହୃଦୟଙ୍ଗମ କରୁଅଛନ୍ତି ।

ପ୍ରସ୍ତାବକ ମାନ୍ୟବର ବ୍ରଜସୁନ୍ଦର ଦାସ ବି, ଏ, କହିଲେ—

ପ୍ରସ୍ତାବଟି ସହଜ ମାତ୍ର ଉପସ୍ଥାପିତ କରିବାର କାରଣ କଣ ? ସେ ଗୁଡ଼ିଏ କଥା ସେ ସମସ୍ତ ଆଲୋଚନା କରିବା ଅସମ୍ଭବ ।

ପ୍ରାକୃତିକ ଓଡ଼ିଶା ପ୍ରକୃତ ମଡ଼ା ଓଡ଼ିଶା ନୁହେଁ । ମନୁଷ୍ୟ ମଲେବେଳେ ତାଙ୍କୁ ପ୍ରକୃତ ମଡ଼ା ବୋଲି କହନ୍ତି । ଓଡ଼ିଆ ଜାତି ମରିନାହିଁ । କେବଳ ବିଭିନ୍ନ ଗବର୍ଣ୍ଣମେଣ୍ଟଙ୍କ ଅଧୀନରେ ଥିବାରୁ ଓଡ଼ିଆଭାଷୀ ଅଞ୍ଚଳକୁ ପ୍ରାକୃତିକ ଓଡ଼ିଶା ବୋଲିଯାଏ । ସେହି ଜାତୀୟତା ବଳରେ ଖଣ୍ଡ ବିଖଣ୍ଡ ଓଡ଼ିଶା ଯୋଡ଼ି ହେବ ।

ବୈଷୟିକ ଶିକ୍ଷା ବା ସ୍ଥାପତ୍ୟ ଶିକ୍ଷା ବିଷୟରେ ଓଡ଼ିଆଜାତି ଚିରପ୍ରସିଦ୍ଧ । ଓଡ଼ିଶା ଇତିହାସରୁ ସ୍ଥାପତ୍ୟପୃଷ୍ଠା ଛିଣ୍ଡାଇଦେଲେ ଆଉ କଅଣ ରହିବ ? ଭୁବନେଶ୍ୱର, କୋଣାର୍କ ଓ ପୁରୀମନ୍ଦିର ଓଡ଼ିଆ ଜାତିର କୀର୍ତ୍ତିସ୍ତମ୍ଭ, ଇତିହାସ । ଏ ସମସ୍ତ ମନ୍ଦିର ନଷ୍ଟ ହେଲେ ଓଡ଼ିଆର ଗୌରବଚିହ୍ନ ଆଉ କଣ ରହିବ ? ଅତି ଶିକ୍ଷିତ ପାଶ୍ଚାତ୍ୟମାନଙ୍କ ହୃଦୟରେ ଯେଉଁ ଜାତିର ସ୍ଥାପତ୍ୟ ବିସ୍ମୟ ଜନ୍ମାଉଅଛି ସେ ଜାତିର ସ୍ଥାପତ୍ୟ କଣ ଥିଲା ଆପଣମାନେ ସହଜରେ ହୃଦୟଙ୍ଗମ କରିପାରିବେ । ଜାତିର ଅତୀତ କଅଣ ଥିଲା ତାହା ଦେଖି ଶିକ୍ଷା ଦେବା ଉଚିତ । ସବୁ ଜାତିର— ଜର୍ମାନ, ଫ୍ରେଞ୍ଚ, ଇଂରାଜ ସମସ୍ତ ଜାତିଙ୍କର କୌଶଳ ବୈଷୟିକ କାର୍ଯ୍ୟରେ ବିଶେଷତ୍ୱ ଅଛି । ଜର୍ମାନ ଜାତି ଧର୍ମବଳରେ ନୁହେଁ, ସତ୍ୟ ବଳରେ ନୁହେଁ କେବଳ ସ୍ଥାପତ୍ୟବଳରେ ଆଜି ସମରପ୍ରାଙ୍ଗଣରେ ଅବତୀର୍ଣ୍ଣ । ଓଡ଼ିଆ ଜାତିର ଜାତୀୟତ୍ୱ କେବଳ ତାର ସ୍ଥାପତ୍ୟରେ Genius to the Oriya lies in its architecture. ଆଜିକାଲି ଅନେକ ଓଡ଼ିଆ ହାତ ଉପାୟରେ ବୂଢର ହେଉଅଛନ୍ତି । ଏହା ଜାତିର ଗୌରବ ବଢ଼ାଉଅଛି ସତ୍ୟ, ମାତ୍ର ଭୁବନେଶ୍ୱର ଦେଉଳ ପରି ବଡ଼ କାମ ଜାତିର ଟେକ୍ ରଖିବ । ଓଡ଼ିଆ କେଉଁ ଶିକ୍ଷାରେ ବିଶେଷତ୍ୱ ଦେଖାଇପାରିବ ଏଥିପ୍ରତି ସରକାର ଦୃଷ୍ଟି ପଡ଼ିନାହିଁ । ତାହା ହୋଇଥିଲେ P. W. D. ରେ ଜଣେ ହେଲେ ଓଡ଼ିଆ ଥାନ୍ତେ । ଓଡ଼ିଆର ପଶ୍ଚାତ୍ପଦ ହେବାର କାରଣ କେବଳ ତାହାର ଶିକ୍ଷାର ଅଭାବ । ଓଡ଼ିଆଙ୍କ ମଧ୍ୟରୁ ଯେଉଁମାନେ ସ୍ଥାପତ୍ୟ ଶିକ୍ଷାରେ ସୁବିଧା

ପାଉଅଛନ୍ତି ସେମାନେ ବୃତ୍ତିକୁ ଦେଖାଉଅଛନ୍ତି ଓଡ଼ିଆ ଜାତିସୂତା ଜାଗ୍ରତ କରାଇବା ପାଇଁ କଟକରେ ଗୋଟିଏ ଇଞ୍ଜିନିୟରିଂ ସ୍କୁଲ ସ୍ଥାପନ କରିବା ଏକାନ୍ତ ଆବଶ୍ୟକ । ହକ୍ରିଭଜନ ଅଠଗଡ଼ର ରାଜା ମହୋଦୟ ଏହି ଉଦ୍ଦେଶ୍ୟରେ ଟ ୨୦୦୦୦ଙ୍କା ସରକାର ବାହାଦୁରଙ୍କ ହସ୍ତରେ ଅର୍ପଣ କରିଅଛନ୍ତି । ଯୁଦ୍ଧ ସମସ୍ତ ଶୁଭକାର୍ଯ୍ୟର ଅନ୍ତରାୟ ହୋଇଅଛି । ସମସ୍ତ ବ୍ୟୟ ବହନ କରି ସରକାର ବାହାଦୁର ଗୋଟିଏ ସ୍କୁଲ ସ୍ଥାପନ କରନ୍ତୁ ଏ ପ୍ରାର୍ଥନା ବର୍ତ୍ତମାନ ସମୟରେ ଉପଯୁକ୍ତ ନୁହେଁ । ଆମ୍ଭେମାନେ ଚେଷ୍ଟାଦ୍ୱାରା ଯଥାସାଧ୍ୟ ଅର୍ଥ ସଂଗ୍ରହ କରି ସରକାରଙ୍କ ହଜୁରରେ ଦାଖଲ କଲେ ଅବଶ୍ୟ କୃତକାର୍ଯ୍ୟ ହେବୁଁ । ଯଦି ଆପଣମାନେ ଏହି ପ୍ରସ୍ତାବକୁ ସମୀଚୀନ ବୋଲି ମନେ କରନ୍ତି ତେବେ ସମ୍ପାଦିକା ବା ଅର୍ଥ ସମ୍ପାଦକଙ୍କଠାରୁ ଚାନ୍ଦା ପଠାଇଲେ ଆଶା ସଫଳ ହେବ । ପ୍ରାୟ ୨ ଲକ୍ଷ ଟଙ୍କା ହେଲେ ସ୍କୁଲଟିଏ ହୋଇପାରିବ ।

ଅନୁମୋଦକ ଗଣେଶ ମହାପାତ୍ର ବି, ଏଲ କହିଲେଃ—

ଅନେକଦିନରୁ ଏ ପ୍ରସ୍ତାବ ସମ୍ମିଳନୀ ମଣ୍ଡପରେ ଆଗତ ହେବାରୁ ସରକାର ବୁଝିଲେଣି ଓଡ଼ିଆମାନେ ବୈଜ୍ଞାନିକ ଶିକ୍ଷା ଚାହାନ୍ତି । ମାନ୍ଦ୍ରାଜ ବା ଓଡ଼ିଶାରେ ଏ ଶିକ୍ଷାର ବ୍ୟବସ୍ଥା ନାହିଁ । ଏହି ପ୍ରଦେଶର ଓଡ଼ିଆମାନେ ବୈଜ୍ଞାନିକ ଶିକ୍ଷା ସକାଶେ ଶିବପୁର ଯିବାକୁ ବାଧ୍ୟ । କଟକ ସର୍ଭେସ୍କୁଲ କିଛି ନୁହେଁ । ଏପରି ଶିକ୍ଷା ବ୍ୟବସ୍ଥା ନ ଥିବା ଶୋଚନୀୟ ବ୍ୟାପାର । ଓଡ଼ିଆମାନଙ୍କ ମଧ୍ୟରେ ଯୋଗ୍ୟ ଲୋକ ନାହାନ୍ତି ଏପରି ନୁହେଁ । ଇଞ୍ଜିନିୟରିଂ କଲେଜ ପ୍ରତିଷ୍ଠା ଅର୍ଥସାପେକ୍ଷ । ବିଶେଷତଃ ଯୁଦ୍ଧ ତାହା ଅଧିକ ଅସମ୍ଭବ କରିଅଛି, ମାତ୍ର ସବୁବେଳେ ସରକାରଙ୍କୁ ଚାହିଁବା ଉଚିତ ନୁହେଁ । ଅଠଗଡ଼ର ରାଜା କୋଡ଼ିଏ ହଜାର ଟଙ୍କା ଦେଇଅଛନ୍ତି । ଓଡ଼ିଶାରେ ଧନୀ, ଗଣ୍ୟମାନ୍ୟ ରାଜା, ଜମିଦାର ଅନେକ ଅଛନ୍ତି । ଓଡ଼ିଶାରୁ ଦୁଇଲକ୍ଷ ଟଙ୍କା ସଂଗ୍ରହ ହେବା କଷ୍ଟ ନୁହେଁ । ଗଞ୍ଜାମ ରାଜନୈତିକ ଓଡ଼ିଶାରୁ ପୃଥକ୍ ଥିଲେ ମଧ୍ୟ ଓଡ଼ିଶାକୁ ମାତୃଭୂମି ବୋଲି ମନେ କରିଥାଏ । ମୁଁ ଆନନ୍ଦ ସହିତ ପ୍ରସ୍ତାବଟିକୁ ଅନୁମୋଦନ କରେଁ ।

ସମର୍ଥକ ବାବୁ ଶ୍ରୀ ପୀତବାସ ପଟ୍ଟନାୟକ କହିଲେଃ—

ଓଡ଼ିଶାରେ ଇଞ୍ଜିନିୟରିଂ ସ୍କୁଲର ଅଭାବ ମୁଁ ସ୍ୱୟଂ ବିଶେଷଭାବରେ ଉପଲବ୍ଧି କରିଅଛି । ଗତ ଛଅବର୍ଷ ପୂର୍ବେ District Board ରେ କାର୍ଯ୍ୟ କଲାବେଳେ ଜାଣିଥିଲି ଓଡ଼ିଆ P, W. D. ରେ ନାହାନ୍ତି । ଓଡ଼ିଆର ଏଣ୍ଟ ବାସନା । ଇଞ୍ଜିନିୟରିଂ କଲେଜରେ ନାହିଁ, କଟକ ସର୍ଭେସ୍କୁଲରୁ ପାସ କରିବା ବ୍ୟକ୍ତି ମାସିକ

ଟ ୧୫।୬୦ ଟାରୁ ବେଶୀ ଉପାର୍ଜ୍ଜନ କରେ ନାହିଁ । କିନ୍ତୁ ପ୍ରତ୍ୟେକ ଛାତ୍ରର ମାସିକ ଶିକ୍ଷା ବ୍ୟୟ ଟ ୫୦।୬୦ ଟାରୁ କମ୍ ନୁହେଁ । ତ ଦୁଃଖର ବିଷୟ ଟ ୬୧ ଟାର ଜଣେ ସର୍ଭେୟାର ସବୋଟେଣ ଛାତ୍ର ଓ ବଙ୍ଗଳାରୁ ଲୋକ ଆଣିବାକୁ ହୁଏ । ଆମ୍ଭମାନଙ୍କ ବାପ ଅଜା ଅବଶ୍ୟ ଭୁବନେଶ୍ୱର ଦେଉଳ ନିର୍ମାଣ କରିଥିଲେ । ବର୍ତ୍ତମାନ ଅବସ୍ଥାରେ ନିତାନ୍ତପକ୍ଷରେ କଟକରେ ଗୋଟିଏ Overseer class ଦରକାର । ଆମ୍ଭମାନଙ୍କ ମଧ୍ୟରେ ଲୋକ ଅଛନ୍ତି ମାତ୍ର ମନ ନାହିଁ ତେଣୁ ସମସ୍ତେ ମନ ଦେଇ କାର୍ଯ୍ୟ କଲେ ଅବଶ୍ୟ ଉଦ୍ଦେଶ୍ୟ ପୂରଣ ହେବ ।

ବାବୁ ନିତ୍ୟାନନ୍ଦ ଦାସ ବି, ଏଲ୍ ଉପରୋକ୍ତ ପ୍ରସ୍ତାବଟିକୁ ସମର୍ଥନ କରି କହିଲେ:—

ପୂର୍ବ୍ବ ବକ୍ତାଙ୍କ ବକ୍ତୃତାରୁ ଲଜ୍ଜାଜନକ । ମଧୁବାବୁଙ୍କ ଭଳି ଅର୍ଦ୍ଧେକ ଓଡ଼ିଆ Overseer ନାହିଁ । ଏ ଜାତି କେଉଁଣ ଏ ଅଭାବକୁ ବୋଧ କରୁଅଛି । ଆମ ଦେଶର ଲୋକେ ଅନେକବାଟରେ ହଜାର ହଜାର ଟଙ୍କା ବ୍ୟୟ କରନ୍ତି । ଏ କାର୍ଯ୍ୟରେ ହସ୍ତକ୍ଷେପ କଲେ ଯେ ଆମଦେଶ ବ୍ୟୟ ନିର୍ବାହ କରିବାକୁ ସମର୍ଥ ନ ହେବ ଏ କଥା ମୁଁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ । ବ୍ୟକ୍ତିଗତଶକ୍ତି ଜାତୀୟଶକ୍ତିର ମୂଳ ।

ଅତଏବ ଆମ୍ଭେମାନେ ତେଣୁ ଆଶା କରୁଁ ଆଗାମୀ ସମ୍ମିଳନୀ ପୂର୍ବରୁ ମିଳନ ଶାଖି ସ୍ଥାପିତ ହେବ ।

ବାବୁ ମୁକୁନ୍ଦପ୍ରସାଦ ଦାସ ମୁକ୍ତାର କହିଲେ:—

ବର୍ତ୍ତମାନ କେବଳ ବାଲେଶ୍ୱର ଜିଲ୍ଲାର ଛାତ୍ରର ସଂଖ୍ୟା ଦେଖିଲେ ଛାତ୍ରର ସ୍କୁଲର ଉପକାରିତା ବୁଝାଯାଏ ।

କଟକ, ପୁରୀ, ବାଲେଶ୍ୱରରୁ ଶତ ଶତ ଲୋକ କଟକ ମେଡ଼ିକେଲ ସ୍କୁଲରୁ ପାଶ କରି ଦେଶ, ବିଦେଶକୁ ଯାଇ ନିଜର ଜୀବିକାଉପାର୍ଜ୍ଜନ କରୁଅଛନ୍ତି, ତଥା ଉତ୍କଳର ଗୌରବ ବଢ଼ାଉଅଛନ୍ତି । ସେହିପରି କଟକରେ ଗୋଟିଏ ଇଞ୍ଜିନିୟରିଂ ସ୍କୁଲ ସ୍ଥାପିତ ହେଲେ ଅନେକ ଉତ୍କଳୀ ଜୀବିକାନିର୍ବାହର ନୂତନ ପନ୍ଥା ପାଇବେ ଓ କାର୍ଯ୍ୟକ୍ଷେତ୍ରରେ ଯୋଗ୍ୟତା ଦେଖାଇ ନିଜର ଓ ଜାତିର ଟେକ୍ ବଢ଼ାଇବେ । ବର୍ତ୍ତମାନ ସ୍କୁଲ ଉଦ୍‌ଘାଟନ କଲେ ଛାତ୍ରସଂଖ୍ୟା ଅତିଅଳ୍ପ ହେବାରୁ ସ୍କୁଲ ଅଚଳ ହେବ ଏ ଆଶଙ୍କା କରିବା ଉଚିତ ନୁହେଁ । ପ୍ରଥମେ ରେଭେନ୍ସା କଲେଜ ଖୋଲା ହେଲା ସମୟରେ ସମସ୍ତ ଶ୍ରେଣୀର ମୋଟ ସଂଖ୍ୟା ୧୦ ବା ୧୨ ଥିଲା । କିନ୍ତୁ ବର୍ତ୍ତମାନ ସ୍ଥାନାଭାବରୁ ଅନେକ ଛାତ୍ର କଲେଜରେ ପ୍ରବେଶ ଲାଭ କରିପାରୁନାହାନ୍ତି । ଅତଏବ ସ୍କୁଲ ସ୍ଥାପିତ ହେଲେ ପରେ ଛାତ୍ର ଜୁଟିପାରିବେ ।

### ୬ଷ୍ଠ ନିର୍ଦ୍ଧାରଣ—

ମାନ୍ଦ୍ରାଜ ମଧ୍ୟପ୍ରଦେଶ ଓ ବଙ୍ଗପ୍ରଦେଶମାନଙ୍କରେ ଥିବା ଓଡ଼ିଆ ଅଞ୍ଚଳମାନ ବିହାର ଓଡ଼ିଶା ପ୍ରଦେଶାନ୍ତର୍ଗତ ଓଡ଼ିଆଶ୍ରେଣୀ ଅଞ୍ଚଳ ସହିତ ଏକ ସ୍ୱତନ୍ତ୍ର ଶାସନ-ଭୁକ୍ତ ନ ହେଲେ ଓଡ଼ିଆ ଜାତିର ପ୍ରକୃତ ଉନ୍ନତି ସାଧିତ ହୋଇପାରିବ ନାହିଁ ବୋଲି ସମ୍ମିଳନୀ ଉପଲବ୍ଧି କରନ୍ତି ଏବଂ ଏହି ସମ୍ମିଳନ କାର୍ଯ୍ୟରେ ପରିଣତ ହେବା ନିମିତ୍ତ ଗଭର୍ଣ୍ଣମେଣ୍ଟଙ୍କ ମନୋଯୋଗ ଆକର୍ଷଣ କରିବାଲାଗି ଯେଉଁ ୨ ବିହିତ ଉପାୟ ଅବଶ୍ୟକ ସେ ସବୁ ବିଷୟ ଅବଲମ୍ବନ ନିମିତ୍ତ ନିମ୍ନଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗଠିତ କମିଟି ଉପରେ ସମ୍ପୂର୍ଣ୍ଣ ଭାର ଅର୍ପଣ କରୁଅଛନ୍ତି ।

୧ । ମାନ୍ୟବର ଶ୍ରୀ ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ ରାଜା ସାହେବ କନିକା ।

୨ । ମାନ୍ୟବର ମିଷ୍ଟର ଏମ୍, ଏସ୍, ଦାସ ସି, ଆଇ, ଇ ।

୩ । ମାନ୍ୟବର ବ୍ରଜସୁନ୍ଦର ଦାସ ବି, ଏ, ( ସେକ୍ରେଟେରୀ )

୪ । ମାନ୍ୟବର ଗୋପବନ୍ଧୁ ଦାସ ବି, ଏଲ୍ ।

୫ । ମାନ୍ୟବର ଶୋଭାଚନ୍ଦ୍ର ସିଂହ ।

୬ । ଶ୍ରୀଯୁକ୍ତ ରାୟ ସୁଦାମଚରଣ ନାୟକ ବାହାଦୁର ।

୭ । ଶ୍ରୀଯୁକ୍ତ ହରିହର ପଣ୍ଡା ବି, ଏ ।

ପ୍ରସ୍ତାବକ ମାନ୍ୟବର ରାଜାସାହେବ କନିକା କହିଲେ—ପ୍ରତ୍ୟେକ ଓଡ଼ିଆ ଏ ନିର୍ଦ୍ଧାରଣ ସମର୍ଥନ କରିବେ । ଏହାପ୍ରତି ଓଡ଼ିଆର ଚିର ପୋଷିତ ଆଶା— ଏହା ସବୁ ଓଡ଼ିଆଙ୍କ ହୃଦୟତନ୍ତ୍ରୀରେ ଆଘାତ ହେଉଅଛି । ଏଥିଲାଗି ଏତେ ଚେଷ୍ଟା ଓ ଉଦ୍ୟମ । କେଉଁ ଓଡ଼ିଆ ନ ଚାହେଁ ସବୁ ଓଡ଼ିଆ ଅଞ୍ଚଳ ଏକତ୍ର ହେବ ।

ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କ ସଭ୍ୟତା ଗଙ୍ଗାଠାରୁ, ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟବିସ୍ତାର କୀର୍ତ୍ତିଭୂମି । ଭୁବନେଶ୍ୱର, କୋଣାର୍କ ଦେଉଳ ଦେଖିବାକୁ ଆସି କେତେ ଲୋକ ମୁଗ୍ଧ ହେଉନାହାନ୍ତି ? ପୂର୍ବକାଳରେ ଓଡ଼ିଆମାନେ ବାଣିଜ୍ୟରେ ଯଥେଷ୍ଟ ପ୍ରତିପତ୍ତି ଲାଭ କରିଥିଲେ । ସମୁଦ୍ରଯାତ୍ରା, ପୂର୍ବେ ଓଡ଼ିଆର ଧର୍ମବିରୁଦ୍ଧ କାର୍ଯ୍ୟ ନ ଥିଲା । ଓଡ଼ିଆମାନେ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଇ ଯାଭା ପ୍ରଭୃତି ଦ୍ୱୀପମାନଙ୍କରେ ବସତି ସ୍ଥାପନ କରିଥିଲେ । ସିଙ୍ଗାପୁର ଓ ମାଳୟ ଉପକୂଳରେ ଓଡ଼ିଆମାନେ କଳିଙ୍ଗ ବୋଲି ପରିଚିତ । ପୂର୍ବ ଗୌରବ ବର୍ତ୍ତମାନ ଅବସ୍ଥା ସଙ୍ଗରେ ତୁଳନା କଲେ ତ ଲଜ୍ଜା ବୋଧହୁଏ । ଏହାର ପ୍ରଧାନ

କାରଣ ଓଡ଼ିଶା ଖଣ୍ଡୀଭୂତ ହେବା । ବର୍ତ୍ତମାନ ଓଡ଼ିଶା ଚାରିଖଣ୍ଡରେ ବିଭକ୍ତ— ଖଣ୍ଡେ ମଧ୍ୟପ୍ରଦେଶରେ, ଖଣ୍ଡେ ବଙ୍ଗରେ, ଖଣ୍ଡେ ବିହାରରେ ଓ ଅପରଖଣ୍ଡ ମାନ୍ଦ୍ରାଜରେ । ସେହି ସ୍ଥାନମାନଙ୍କର ଲୋକସଂଖ୍ୟା ତୁଳନାରେ ଓଡ଼ିଆମାନେ ଅଳ୍ପ ଥିବାରୁ ଓଡ଼ିଆମାନଙ୍କର ଉନ୍ନତି ହେବା ଦୂରେଥାଉ ସେମାନଙ୍କ ଅସ୍ତିତ୍ୱ ଲୋପ ପାଉଅଛି । ସେମାନେ ଭାଷା ଓ ଜାତିତ୍ୱ ଭୁଲି ଯାଉଅଛନ୍ତି । ସେମାନେ କ୍ରମଶଃ ଦୁର୍ବଳ ହୋଇ ପଡ଼ୁଅଛନ୍ତି । ମାନ୍ଦ୍ରାଜ ଅଞ୍ଚଳ ଓଡ଼ିଆଙ୍କ ଅସୁବିଧା ହେଲେ ଆମ୍ଭେମାନେ କଷ୍ଟ କରିପାରୁଁ ନାହୁଁ । ସେମାନଙ୍କ ଅସୁବିଧା ଦୂର କରିବାକୁ ସରକାରଙ୍କ ସାହାଯ୍ୟ ଆବଶ୍ୟକ । ମାତ୍ର ଆମ୍ଭେମାନେ ଏକମତ ହେଲେ ସରକାର ଅବଶ୍ୟ ସାହାଯ୍ୟ କରିବେ । ତେଣୁ ମୁଁ ଏ ପ୍ରସ୍ତାବ ଅନୁମୋଦନ କରେ ।

ଅନୁମୋଦକ ଶ୍ରୀଯୁକ୍ତ ଗଣେଶ ମହାପାତ୍ର ବି, ଏଲ, କହିଲେ—

The resolution which has been so ably moved is of supreme importance. We have been always emphacising it since 1902. We have felt it. This movement proceeded from Raja Baikunthanath Dey Bahadur. This was followed by a memorial—a Viceroy's proposal was nipped in the bud. It was opposed by the Telgus. Since then there has been a change in the policy of the Government.

Authoritative pronouncement in the despatch of Lord Hardinge. We are strengthened with this. There has also been a change in views of the Telgus. They agitate in the change of Andhra province. We ourselves have undergone changes. The things in 1902 are different from now The people themselves realise that the Oriya is a different race with a tradition of their own. We are not afraid of any opposition. Doting over the past is a weakness unless we turn to the present. We ought to feel that we are dismembered. This step of separation is merely accidental on the part of the Government and not mature and deliberate. Hence we are to bring it to the kind notice of Government without attributing any fault to it because Government cannot be illogical and in consistent, Lord Pent land's sayed that

the Oriyas, demand is just which ought to be granted. Serious difficulties in practical realisation there are. Any concession to minority of Oriyas is inadequate. The same state of things continue everywhere. It may be the administration of a Commissioner However we want to be placed under one administration The Sub-Committee consisting of the members proposed would be of immense use to secure this happy end. We have hope that it will be able to bring about the result.

ବାବୁ ଚନ୍ଦ୍ରଶେଖର ବେହେରା କହିଲେ ଃ—

I will bring before the Conference a few difficulties of this dis-memberment of the Oriya tracts—the difficulties which Sambalpur felt for a long time. Hindi as Court language in Sambalpur gave immense trouble to the people. It is only the interest of selfish people to keep us separated from our brothers in other provinces. The Government will lose nothing by our union. But on the otherhand our union with our brothers will enable us to reap the full benifits of the British rule in India.

ପଣ୍ଡିତ ଶ୍ରୀ ଯୁତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ କହିଲେ ଃ—

ଉତ୍କଳଭୂମିର ଏକତ୍ରୀ କରଣ ଏହି ସମ୍ମିଳନୀର ଉଦ୍ଦେଶ୍ୟ । ସିଂହଭୂମରେ ଓଡ଼ିଆଭାଷା ପ୍ରଚଳିତ କଲେ ସମ୍ମିଳନୀ କେତେକଟା କାଳର କର୍ତ୍ତବ୍ୟ କରି ପାରିବେ । ଓଡ଼ିଆମାନେ ସର୍ବତ୍ର ଘୃଣିତ ଓ ଲାଞ୍ଛିତ, ଏମନ୍ତ କି ଶବ୍ଦକଳ୍ପଦ୍ରୁମର ଲେଖକ ଉତ୍କଳ ଶବ୍ଦର ଅର୍ଥ ଭାରବାହକ ବୋଲି ଲେଖିଅଛନ୍ତି । କିନ୍ତୁ ଉତ୍କଳର ପ୍ରକୃତ ଅର୍ଥ ଦେଉଅଛି ଉତ୍=ଶ୍ରେଷ୍ଠ, କଳ=କଳା ଯାହାର ଅର୍ଥାତ୍ ଶ୍ରେଷ୍ଠ ସ୍ଥାପତ୍ୟ ଜାତି । ଏହି ଅର୍ଥର ସାର୍ଥକତା ସମ୍ପାଦନରେ ଖଣ୍ଡୀକୃତ ଓଡ଼ିଶା ଗୋଟିଏ ପ୍ରଧାନ ଅନ୍ତରାୟ । ତେଣୁ ଏ ପ୍ରସ୍ତାବର ଆବଶ୍ୟକତା ।

ଶ୍ରୀ ଯୁତ ରାମକୃଷ୍ଣ ପଟ୍ଟନାୟକ ବି, ଏଲ, କହିଲେ ଃ—

ଉତ୍କଳଖଣ୍ଡମାନ ଏକତ୍ର ହେଲେ ସମସ୍ତ ଅଭାବ ଦୂରୀଭୂତ ହେବ ସନ୍ଦେହ ନାହିଁ । ବିହାର ବିଶ୍ୱବିଦ୍ୟାଳୟ ସମ୍ବନ୍ଧୀୟ ଆଇନର ପାଣ୍ଡୁଲିପିରେ ଓଡ଼ିଆର ଉଚ୍ଚ ଶିକ୍ଷାର ବିଶେଷ କୌଣସି ବ୍ୟବସ୍ଥା ନାହିଁ । କଟକ ବ୍ୟତୀତ ଓଡ଼ିଶାର ଅନ୍ୟତ୍ର କଲେଜ ହେବାର କଥା ନାହିଁ । ସୁତରାଂ ଖଣ୍ଡ ଉତ୍କଳ ଏକତ୍ରିତ ହେଲେ ସର୍ବେମାନଙ୍କ

ସ୍ୱତନ୍ତ୍ର ବ୍ୟବସ୍ଥା ନ ହେବାରୁ ହୋଇଥାନ୍ତା । ଜାତି ଗଠନର ସମସ୍ତ ଉପାଦାନ ଓଡ଼ିଶାରେ ଅଛି । ଓଡ଼ିଶାର ଜାତୀୟ ସାହିତ୍ୟ ଅଛି, ଗୌରବମୟ ଇତିହାସ ଅଛି । ବଙ୍ଗର କବି ଈଶ୍ୱରଚନ୍ଦ୍ର, କବିବର ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ ଥିଲେ । ଉପେନ୍ଦ୍ରଭଞ୍ଜଙ୍କର କବିତାର ମୂଲ୍ୟ ଅନେକ ବିଷୟରେ ଈଶ୍ୱରଚନ୍ଦ୍ରଙ୍କର କବିତା ଅପେକ୍ଷା ଶ୍ରେଷ୍ଠ । ଓଡ଼ିଶାର ଧର୍ମ ସର୍ବଜନୀନତା । ମାନ୍ଦ୍ରାଜ ଗଞ୍ଜାମର ସ୍ୱାର୍ଥ ଦେଖିବ ନାହିଁ କିନ୍ତୁ ଓଡ଼ିଶାର ସ୍ୱାର୍ଥ ନାନା କାରଣରୁ ଗଞ୍ଜାମ ସହିତ ଜଡ଼ିତ । ବଙ୍ଗପ୍ରଦେଶଭୁକ୍ତ ଖଣ୍ଡ ଓଡ଼ିଶାର ମଧ୍ୟ ସେହି ଦଶା । ଯେଉଁ ସବକମିଟି ଉପରେ ଭାର ଅର୍ପଣ କରାଗଲା ସେମାନେ ତ ନିଜର ଶକ୍ତି ନିୟୋଜିତ କରିବେ । ତା ବୋଲି ଅମ୍ଭମାନଙ୍କର କର୍ତ୍ତବ୍ୟ ଶେଷ ହେଲା ଏହା ନୁହେ । ଏ ଗୋଟିଏ ମହତ୍ ଜାତୀୟ ପ୍ରଶ୍ନ । ପ୍ରତ୍ୟେକ ବ୍ୟକ୍ତିର ଏଥିପ୍ରତି ଯଥେଷ୍ଟ କର୍ତ୍ତବ୍ୟ ଅଛି ।

ଅମିଦାର ପଣ୍ଡିତ ଶ୍ରୀଯୁତ ଗଜଗୋପାଳ ଆଚାର୍ଯ୍ୟ କହିଲେ :—

ମୁଁ ଜଣେ ଦ୍ରାବିଡ଼ର ଲୋକ, ୧୦।୧୨ ବର୍ଷ ପୂର୍ବେ ମୁଁ ଜାଣିଲି ଅମ୍ଭମାନଙ୍କର ପୂର୍ବପୁରୁଷମାନେ ଓଡ଼ିଶାରୁ ଯାଇଥିଲେ । ଓଡ଼ିଆ ଜାତି ବଙ୍ଗ ବିହାର ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ଅଧୀନରେ ରହିବାରୁ ସମ୍ୟକ ଉନ୍ନତି କରି ପାରୁ ନାହାନ୍ତି । ଭାଷା ଗଠନରେ ଓଡ଼ିଶା ଏକ ହେଲେ ଓ ଏକଶାସନରେ ରହିଲେ ସର୍ବାଙ୍ଗୀଣ ଉନ୍ନତି ହେବ ।

ପାରଳାର ଶ୍ରୀଯୁତ ଅପନ୍ନା ପଣ୍ଡା କହିଲେ—

ଓଡ଼ିଆମାନେ ଭିନ୍ନ ଭିନ୍ନ ଦେଶ ଜୟ କରି ରଜା ହୋଇଥିଲେ । ଓଡ଼ିଆମାନେ ବିଭିନ୍ନ ଶାସନାଧୀନରେ ରହିବାରୁ ଓ ସେମାନଙ୍କ ସଂଖ୍ୟା କମ ହେବାରୁ ନାନା ପ୍ରକାର ଅସୁବିଧା ଭୋଗୁଅଛନ୍ତି । ଅଧିକାଂଶ ଗଞ୍ଜାମବାସୀମାନେ ଓଡ଼ିଆ ଥିବାରୁ ସେଠାକାର ଓଡ଼ିଆମାନେ ଦୁଃଖି ହେଉଛନ୍ତି । ଗବର୍ଣ୍ଣମେଣ୍ଟ ଅବଶ୍ୟ ଅମ୍ଭମାନଙ୍କର ପ୍ରାର୍ଥନା ପୂରଣ କରିବେ ଯେହେତୁ ଅମ୍ଭମାନଙ୍କର ହୃଦୟ ମିଳିଯାଇଅଛି ।

୭ମ ନିର୍ଦ୍ଧାରଣ :—

ଉତ୍କଳୀୟମାନଙ୍କର ଏହି ଅଶାନ୍ତି ଓ ଅସନ୍ତୋଷ ସରକାରଙ୍କୁ ଗୋଚର କରାଇବାକୁ ଜଣେ ଓଡ଼ିଆ ଭାରତୀୟ ବ୍ୟବସ୍ଥାପକ ସଭାରେ ସଦସ୍ୟ ମନୋନୀତ ବା ନିର୍ବାଚିତ ହେବାର ଆବଶ୍ୟକତା ଏହି ସମ୍ମିଳନୀ ଉପଲବ୍ଧି କରନ୍ତି ।

ପ୍ରସ୍ତାବକ ରାୟ ଶ୍ରୀ ସୁଦାମଚରଣ ନାୟକ ବାହାଦୁର କହିଲେ—

ଜଣେ ମଣିଷ ବିନା ଓଡ଼ିଶାର ଅଭାବ ଜଣାଇବ ? ଗଭର୍ଣ୍ଣମେଣ୍ଟ ଆମ୍ଭ ଅସୁବିଧା କଣ ଜାଣି ପାରନ୍ତି ? ଗଭର୍ଣ୍ଣମେଣ୍ଟ ସମସ୍ତ ଅବଗତ ଥିଲେ ମଧ୍ୟ ଅଭାବମାନ ବାରମ୍ବାର ସରକାରଙ୍କ ଗୋଚରକୁ ଆଣିବା ଦରକାର । ସରକାର ବାହାଦୁର ଓଡ଼ିଶାର ମଙ୍ଗଳ କରିବା ପାଇଁ ଚେଷ୍ଟିତ । ମାତ୍ର ତାଙ୍କର ଅନ୍ୟାନ୍ୟ କାର୍ଯ୍ୟର ଚେଷ୍ଟା ଦେଖା ଅଛି । କେବଳ ପୂର୍ବ ଭାଗ କହି ଆମ୍ଭମାନେ ନୀରବ ରହିଲେ ଅଭାବମାନଙ୍କ ପ୍ରତି ସରକାରଙ୍କ ଦୃଷ୍ଟି ପୁନଃ ଆକର୍ଷଣ ନ କଲେ ଅଭାବ ଚିରଦିନ ରହିବ । ତେବେ ଏ ପ୍ରସ୍ତାବ ଅନୁମୋଦନ କଲି ।

ଲାଲମୋହନ ପତି ଓକିଲ କହିଲେ:—

ଏହି ସମ୍ବନ୍ଧ ପ୍ରସ୍ତାବକ ହେଲୁ ଜଣେ ଓଡ଼ିଆ ସଭ୍ୟ ହେବାର ଆବଶ୍ୟକତା ଆମ୍ଭେମାନେ ପୂର୍ବ ପ୍ରସ୍ତାବକୁ ଉତ୍ତମ ରୂପେ ହୃଦୟଙ୍ଗମ କରିଅଛନ୍ତି । ସମସ୍ତ ଓଡ଼ିଆ ଭାଷୀ ସ୍ଥାନକୁ ଏକତ୍ର କରିବାର ନ୍ୟାୟ ଦାବି ଓ ଯୁକ୍ତି ଭାରତ ଗଭର୍ଣ୍ଣମେଣ୍ଟଙ୍କ ସମୀପରେ ପୁନଃ ଉପସ୍ଥିତ କରି ଆମ୍ଭମାନଙ୍କ ପ୍ରାର୍ଥନାର ଯୌକ୍ତିକତା ସରକାରଙ୍କ ହୃଦୟଙ୍ଗମ କରାଇ ନ ପାରିଲେ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ । ସରକାର ଅନ୍ତରର ଭାବରେ ଜାଣିଅଛନ୍ତି ସତ୍ୟ ମାତ୍ର ସେ ଯଥେଷ୍ଟ ନୁହେଁ । ରାଜକାର୍ଯ୍ୟରେ ଲୋକଙ୍କର ଯେ କି ଅସୁବିଧା କାର୍ଯ୍ୟ ପରିଚାଳନା ହେତୁ ଏହା ସବୁ ଜାଣିବାର ଆବଶ୍ୟକ ଏବଂ ସମସ୍ତ ଗଭର୍ଣ୍ଣମେଣ୍ଟ ଏ ଯୁକ୍ତିର ସାରବତ୍ତା ହୃଦୟଙ୍ଗମ କରିଅଛନ୍ତି । ଆମ୍ଭମାନଙ୍କର ଏ ପ୍ରାର୍ଥନା ଅତ୍ୟନ୍ତ ଯୁକ୍ତିଯୁକ୍ତ ।

ବାବୁ ଗୋପବନ୍ଧୁ ଦାସ ବି, ଏଲ, କହିଲେ:—

ଆଶା ଏବଂ ଅଭାବ have no limit. Wants are multifarious. But still there are wants which call for immediate help. We feel keenly that one of us should go to the imperial Council to represent our wants Mr. Das was returned once to the supreme Council. This time the Raja of Kanika is returned. These elections depended on the good will of the Beharies. This is a precarious position. The question of unification of the Oriya speaking tracts is very urgent. But hitherto it has been a cry in the air owing to want of constitutional agitation. To-morrow the Patna University will be passed. Who

will bring the wants of the Oriyas to the notice of the Council? Press and Platform are not so much effective as a member in the Council for representing one's cause. I fullysupport the proposal.

ତାପରେ ଜନୈକ ପ୍ରତିନିଧି ସଙ୍ଗୀତଟି ଗାଇଲେ ।

"ଅଜି ମାତୃପୂଜା ଉତ୍ସବ—

... ... ... ..."

୮ମ ନିର୍ଦ୍ଧାରଣ—

ବିହାରସ୍ଥ ବାଙ୍କିପୁର ସହରରେ ଉପସ୍ଥାପିତ ପାଟଣା ବିଶ୍ୱବିଦ୍ୟାଳୟ ପ୍ରସ୍ତାବ ଗୃହୀତ ହେଲେ ଓଡ଼ିଶାର ଶିକ୍ଷୋନ୍ନତିରେ ବିଶେଷ ବାଧା ଘଟିବ ଏବଂ ପ୍ରାକୃତିକ ଓଡ଼ିଶା ଭିତରେ ପୃଥକ୍ ବିଶ୍ୱବିଦ୍ୟାଳୟ ସ୍ଥାପିତ ନ ହେବା ପର୍ଯ୍ୟନ୍ତ ଓଡ଼ିଆଙ୍କର ଉଚ୍ଚଶିକ୍ଷାର ଉନ୍ନତି ସମ୍ଭବ ହେବ ନାହିଁ ବୋଲି ଏହି ସମ୍ମିଳନୀ ବିବେଚନା କରନ୍ତି ଏବଂ ଉକ୍ତ ବିଲ ( Bill ) ଯାହାଦ୍ୱାରା ଓଡ଼ିଆଙ୍କ ସ୍ୱାର୍ଥାନୁଯାୟୀ ପରିବର୍ତ୍ତିତ ନ ହେବାଯାଏ ଶିକ୍ଷା ବିଷୟରେ ଓଡ଼ିଶା କଲିକତା ବିଶ୍ୱବିଦ୍ୟାଳୟର ଅଧୀନରେ ଯେପରି ଅଛି ସେହିପରି ରଖିବା ନିମିତ୍ତ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରନ୍ତି ।

ପ୍ରସ୍ତାବକ ମାନ୍ୟବର ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ କହିଲେ—

ଏ ପ୍ରସ୍ତାବ ଉପରେ ଜାତିର ଉନ୍ନତି ସମ୍ପୂର୍ଣ୍ଣ ନିର୍ଭର କରେ । ଏ ବିଲ ଦ୍ୱାରା ବେହାର ଓଡ଼ିଶା ଶିକ୍ଷା କିପରି ନିୟନ୍ତ୍ରିତ ହେବ ତାହା ଉପରେ ଓଡ଼ିଆ ଜାତିର ଉନ୍ନତି ବା ଅବନତି ଅଛି ବୋଲି ଜାଣିବା ଆବଶ୍ୟକ । ଏ ବିଶ୍ୱବିଦ୍ୟାଳୟଟି Residential University ହେବ—ଶିକ୍ଷକ ଓ ଛାତ୍ରମାନେ ଏକସ୍ଥାନରେ ରହି ଶିକ୍ଷାର ଅନୁଭବ କରିବେ । ଏହି ଧରଣର ବିଶ୍ୱବିଦ୍ୟାଳୟ ପାଶ୍ଚାତ୍ୟ ଦେଶରେ ଆଦର୍ଶ ସ୍ଥାନୀୟ । ଆମ ଦେଶରେ ଏହା ନୂତନ ନୁହେଁ । ନାଳନ୍ଦାରେ ୧୦୦୦୦ ୨୦୦୦୦ ଛାତ୍ର ଏହି ସ୍ଥାନରେ ଶିକ୍ଷା ପାଉଥିଲେ । ଦେଶ ଓ କାଳ ବିବେଚନାରେ ଏ ବିଶ୍ୱବିଦ୍ୟାଳୟ କଣ ଆମ ଦେଶ ପ୍ରତି ଉପଯୁକ୍ତ ହେବ ? ଏ ଉଦ୍ଦେଶ୍ୟଟି 'ସୋନାର ପଥର ବାଟି' । ଏ ଧରଣର ବିଶ୍ୱବିଦ୍ୟାଳୟ ଗୋଟିଏ ସହରରେ ଅବସ୍ଥାପିତ ଥାଇ ସେହି ସହରସ୍ଥ ଅନ୍ୟାନ୍ୟ କଲେଜ ନେଇ କାର୍ଯ୍ୟ କରେ । ୨୦ ମାଇଲ ବା ୨୫ ମାଇଲ ଦୂରବର୍ତ୍ତୀ କୌଣସି କଲେଜ ବିଶ୍ୱବିଦ୍ୟାଳୟର ଅନ୍ତର୍ଭୁକ୍ତ ହେବା କଥା କୌଣସି ଦେଶରେ ଜଣା ନ ଥିଲା । କିନ୍ତୁ ଆମ ପ୍ରସ୍ତାବିତ ବିଶ୍ୱବିଦ୍ୟାଳୟ ପ୍ରାୟ ୨୦୦ ମାଇଲ ଦୂରସ୍ଥ କଟକ କଲେଜକୁ ଅଧୀନସ୍ଥ କରିବ । ଅନେ ଯିବା

ଉଡ଼ିଶା ସମ୍ବନ୍ଧେ ପାଟଣାକୁ ଧାରଣ କଲେ ଅଧିକ ଶିକ୍ଷା, ଏମେ, ବି ଏମେ, ଏସ୍, ସି ଶିକ୍ଷାର ବ୍ୟବସ୍ଥା ହେଉ ନାହିଁ । କଲିକତା ସଙ୍ଗେ ସମ୍ପର୍କ ରହିବ ନାହିଁ । ତେଣୁ ପାଟଣାକୁ ଯିବାକୁ ହେଲେ କଲିକତା ପାର ହୋଇ ୨୫୦ ମାଇଲ ଯିବାକୁ । ଏ ବନ୍ଦୋବସ୍ତ ହେଉଥିବା ପକ୍ଷରେ କିପରି ଅସୁବିଧାଜନକ ଆପଣମାନେ ସହଜରେ ହୃଦୟଙ୍ଗମ କରିପାରିବେ । ପ୍ରସ୍ତାବିତ ପାଟଣା Residential university ଦ୍ୱାରା ଉଡ଼ିଶାର ବିଶେଷ ଉପକାର ହୋଇପାରିବ ନାହିଁ Orissa wants a federal university ଉଡ଼ିଶା କେବେ Residential University ପାଇବ ଏ ପ୍ରଶ୍ନର ଉତ୍ତର ହେଉଛି in the near-future ତାହା ସେ ନିକଟ ଭବିଷ୍ୟତ କେବେ ଆସିବ ଜଣା ନାହିଁ ।

ଶ୍ରୀଯୁକ୍ତ ବାବୁ ମଧୁସୂଦନ ପାଣିଗ୍ରାହୀ ବି, ଏ, କହିଲେ—

The resolution which has been presented to you by Hon'ble Braja Sunder Das is the most significant question of the day. When the new province of Behar and Orissa was organised it was proposed to make the province self-contained by establishing a university and a separate High Court. I am not going to take you through all the points. The king in his reply to the deputation of the Calcutta university was given a watch word of hope to spread education in India by a net work of schools and colleges and thereby to make the people responsible citizens. But this bill only provides for College or Colleges in Cuttack only. This is a restriction unnecessarily imposed on the Oriya aspiration.

ଶ୍ରୀଯୁକ୍ତ ରାଜେନ୍ଦ୍ରପ୍ରସାଦ ଦାସ ଏମ୍ ଏ, ବି, ଏଲ୍ ସମର୍ଥନ କରି କହିଲେ—

ସଭାପତି ମହୋଦୟ ଓ ଭଦ୍ରମହୋଦୟେ, ପ୍ରସ୍ତାବର ସମର୍ଥନର ଭାର ମୋ ଉପରେ ଅଛି । ପୂର୍ବବର୍ତ୍ତୀ ବକ୍ତାମାନେ ଯଥେଷ୍ଟ କହିଅଛନ୍ତି ତେବେ ମୁଁ ମୋର କ୍ଷୀଣସ୍ୱର ସେମାନଙ୍କ ସ୍ୱର ସହିତ ମିଶାଇବି । ଅନେକେ କହନ୍ତି High ducation has produced a band of Godless youths in Orissa ତାହା ଆପଣମାନେ ମୋ ସହିତ ନିଶ୍ଚୟ ଏକମତ ହେବେ ଯେ ସେମାନେ ସତ୍ୟର ଅପଳାପ କରନ୍ତି । ଉଚ୍ଚଶିକ୍ଷା ବ୍ୟତୀତ ଉଡ଼ିଶାରେ କୌଣସି ଉନ୍ନତି ହୋଇ ନ ପାରେ ଏକଥା ଆପଣମାନେ ଏକବାକ୍ୟରେ ସ୍ୱୀକାର କରିବେ ।

ପ୍ରସ୍ତାବିତ ବିଶ୍ୱବିଦ୍ୟାଳୟ ଦ୍ୱାରା ଓଡ଼ିଶାରେ ଉଚ୍ଚଶିକ୍ଷାର ବାଧା ପଡ଼ିବ ସନ୍ଦେହନାହିଁ । ରେଭେନ୍ସା କଲେଜରେ ଅନାରସ୍ ଶିକ୍ଷା ଦେବାର ବିଶେଷ ବନ୍ଦୋବସ୍ତ ନାହିଁ । କେତେକ ଗୁଡ଼ିଏ ବିଷୟରେ ଅନାରସ୍ ଅଛି ମାତ୍ର ଛାତ୍ରମାନଙ୍କର ସଂଖ୍ୟା ଅଭାବ ଦୂରୀଭୂତ ହେବନାହିଁ । ଅନାରସ୍ ବ୍ୟତୀତ ବି, ଏ, ବା ବି, ଏସ୍, ସି କ୍ଲାସ ଏମେ ବେଳକୁ ବଡ଼ ଅସୁବିଧାରେ ପଡ଼ନ୍ତି । ବିଶେଷତଃ ପାଟଣା ବିଶ୍ୱବିଦ୍ୟାଳୟରେ ଯେ ଅନାରସ୍ ଓ Distinction ରେ ପାସ କରିବ ଛାତ୍ରମାନେ ଏମେରେ ପ୍ରବେଶ ଲାଭ କରିପାରିବେ । ଅନ୍ୟମାନଙ୍କର ପ୍ରବେଶାଧିକାର ନାହିଁ । କଟକରେତ ସବୁ ବିଷୟରେ ଅନାରସ୍ ଶିକ୍ଷାର ବନ୍ଦୋବସ୍ତ ନାହିଁ । ତାହା ହେଲେ ଅତି ଅଳ୍ପ ଓଡ଼ିଆଛାତ୍ର ଏମେ ଉପାଧି ଲାଭ କରିପାରିବେ ।

ନୂତନ ଆଇନରେ କେବଳ କଟକରେ ଅବଶ୍ୟକ ହେଲେ ଏକବ୍ୟତୀତ ବହୁ କଲେଜ ହୋଇପାରିବ । "ପୁରୀ" ବାଲେଶ୍ୱର ବା ସମ୍ବଲପୁରରେ କୌଣସି ସମୟରେ କଲେଜ ହୋଇ ପାରିବନାହିଁ । ଏହା ମଧ୍ୟ ଓଡ଼ିଆଙ୍କର ଉଚ୍ଚଶିକ୍ଷାର ପ୍ରଧାନ ଅନ୍ତରାୟ ହେବ । ପାଞ୍ଚବର୍ଷ ପୂର୍ବର ଅବସ୍ଥା ସହିତ ବର୍ତ୍ତମାନ ଅବସ୍ଥା ତୁଳନା କଲେ ବୁଝାଯିବ ଯେ ଓଡ଼ିଶାରେ ଉଚ୍ଚଶିକ୍ଷା ଲାଭର ଆକାଂକ୍ଷା ବଡ଼ ଦ୍ରୁତଗତିରେ ବଢ଼ୁଅଛି । ବର୍ତ୍ତମାନ ସମସ୍ତ ଆବେଦନକାରୀ ସ୍ଥାନ ପାଉନାହାନ୍ତି । ଅଦୂର ଭବିଷ୍ୟତରେ କଟକରେ ଆଉ ଗୋଟିଏ କଲେଜ ହୋଇପାରେ ତା ବୋଲି ସନ୍ଦେହ ହେବାର କିଛି ମଧ୍ୟ ନ ରହିବ ନାହିଁ ? ଅନ୍ୟତ୍ର କଲେଜ ହେଲେ ବିଶ୍ୱବିଦ୍ୟାଳୟ ସମ୍ୟକରୂପେ ପରିଦର୍ଶନ କରି ପାରିବନାହିଁ, ଏ ଯୁକ୍ତିର ମୂଲ୍ୟ ବଡ଼ କମ । ପାଟଣାରୁ ଜଣେ ପରିଦ୍ରଷ୍ଟା ଆସିଲେ ବାଲେଶ୍ୱର ପାର ହୋଇ କଟକ ଯିବେ । ବାଲେଶ୍ୱରରେ ଅଳ୍ପଘଣ୍ଟା ବିଶ୍ରାମ କଲେ ନିଜ ବଲଭ ସଙ୍ଗେ ବାଲେଶ୍ୱର କଲେଜ ପରିଦର୍ଶନ କରି ପାରିବେ । ଓଡ଼ିଶାର ପ୍ରଧାନ ସ୍ଥାନମାନ ରେଲ ଯୋଗେ ସଂଯୁକ୍ତ । ଅତଏବ ପରିଦର୍ଶନରେ କୌଣସି ବାଧା ଘଟିବନାହିଁ । ଅତଏବ ବିଲ ଓଡ଼ିଆମାନଙ୍କର ସୁବିଧା ଅନୁସାରେ ପରିବର୍ତ୍ତିତ ନ ହେଲେ ଓଡ଼ିଶା କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ରହୁ ।

Mr. Abdul Manan Bar-at-Law said—
I fully support the proposal.

### ୫ ମ ନିର୍ଦ୍ଧାରଣ—

ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଆଗାମୀ ବର୍ଷ ନିମନ୍ତେ କାର୍ଯ୍ୟ ନିର୍ବ୍ବାହକ ସମିତି ଗଠିତ ହେଉ ଓ ଆବଶ୍ୟକ ହେଲେ ସଭ୍ୟସଂଖ୍ୟା ବୃଦ୍ଧି ନିମନ୍ତେ ସେମାନଙ୍କୁ କ୍ଷମତା ଦିଆଯାଉ ଏବଂ ସେହି କମିଟି ସମ୍ମିଳନୀ ସମ୍ବନ୍ଧୀୟ ନିୟମାବଳୀ ପ୍ରସ୍ତୁତ କରି ଆଗାମୀ ବାର୍ଷିକ ଅଧିବେଶନରେ ଅବଗତ କରନ୍ତୁ ।

୧ । ଶ୍ରୀଯୁକ୍ତ ଫକୀରମୋହନ ସେନାପତି
୨ । „ ଭଗବତୀ ପ୍ରସାଦ ମହାପାତ୍ର ।
୩ । „ ଗୋବିନ୍ଦ ପ୍ରସାଦ ଦାସ ଏମ୍, ଏ ବି, ଏଲ୍, ।
୪ । „ ସୁଧାଂଶ୍ୟାମ ଦାସ ।
୫ । „ ଦେବୀପ୍ରସାଦ ଦାସ ବି, ଏଲ୍, ।
୬ । „ ଲାଲମୋହନ ପତି—ଓକିଲ ।
୭ । „ ମୁକୁନ୍ଦ ପ୍ରସାଦ ଦାସ ।
୮ । „ ରାମନାରାୟଣ ପ୍ରହରାଜ ।

ପ୍ରସ୍ତାବକ ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାନ୍ତି ବି, ଏଲ୍, କହିଲେ :—

ଅମ୍ଭେମାନେ ସମସ୍ତେ ଏକାଠି ହୋଇ ଶୁଣିଲୁଁ । ଅମ୍ଭମାନଙ୍କର ସମସ୍ତ ନିର୍ଦ୍ଧାରଣ କେବଳ ସମ୍ମିଳନୀ ମଣ୍ଡପରେ ରହିଯାଏ, ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଗୋଟିଏ କମିଟି ଆବଶ୍ୟକ, ପୂର୍ବପ୍ରଚଳିତ ନିୟମ ଅନୁସାରେ ବାର୍ଷିକ ଅଧିବେଶନ ହେବାମାତ୍ରରେ ସମ୍ମିଳନୀର କାର୍ଯ୍ୟନିର୍ବ୍ବାହକ ସମିତି ପରବର୍ତ୍ତୀ ବର୍ଷକୁ ପଦାର୍ପଣ କରନ୍ତେ । ଅତଏବ ସମିତି ବାଲେଶ୍ୱରରେ ରହିବା ପୂର୍ବରୁ ଯାହା ଦେଖାଯାଉଅଛି ସେଥିରେ ନିର୍ବ୍ବାହକ ସମିତି କୌଣସି କାର୍ଯ୍ୟ କରେ ନାହିଁ । ଅତଏବ ଆସନ୍ତାବର୍ଷ ଅଧିବେଶନବେଳକୁ ବାଲେଶ୍ୱର ଲୋକ-ମାନେ କିଛି କାର୍ଯ୍ୟ କରିପାରିଅଛନ୍ତି ବୋଲି ଦେଖାଇବାକୁ ସମର୍ଥ ହେବେ । ସମ୍ମିଳନୀର ନିୟମାବଳୀ ଅତ୍ୟନ୍ତ ପ୍ରୟୋଜନୀୟ, ବହିପ୍ରସ୍ତାବରେ ଦାୟିତ୍ୱଶୂନ୍ୟ ହୋଇ କାର୍ଯ୍ୟ କରନ୍ତୁ ନାହିଁ ।

ବାବୁ ଶ୍ରୀ ଶିବନାରାୟଣ ନାୟକ, ଶ୍ରୀଯୁତ ପାଠେଶ୍ୱର ମହାନ୍ତି ବି, ଏଲ୍, ଓ ଓକିଲ ଶ୍ରୀଯୁତ ଉଦାରଚରଣ ପଟ୍ଟନାୟକ ପ୍ରସ୍ତାବଟିକୁ ସମର୍ଥନ କଲେ ।

୧୦ମ ନିର୍ଦ୍ଧାରଣ—

ବିହାର ଓଡ଼ିଶା ଅନ୍ତର୍ଭୁକ୍ତ ସିଂହଭୂମ, ମଧ୍ୟପ୍ରଦେଶ ଅନ୍ତର୍ଗତ [illegible] ଚନ୍ଦ୍ରପୁର, ପଦ୍ମପୁର ପ୍ରଭୃତି ଓଡ଼ିଆଅଞ୍ଚଳରେ ଓଡ଼ିଆ କଚେରୀଭାଷାରୂପେ ସ୍ୱୀକୃତ ହେବା ଏବଂ ଓଡ଼ିଆ ଶିକ୍ଷାବିସ୍ତାର କମ୍ପେ ବହୁଳ ବ୍ୟବସ୍ଥା ହେବାର ପ୍ରୟୋଜନୀୟତା ଏହି ସମ୍ମିଳନୀ ଉପଲବ୍ଧି କରନ୍ତି ।

ପ୍ରସ୍ତାବକ ପଣ୍ଡିତ ଶ୍ରୀଯୁତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ କହିଲେ :—

ସିଂହଭୂମରେ ଓଡ଼ିଆ କଚେରୀଭାଷା ହେବା ଉଚିତ, ସିଂହଭୂମିର ଅଧିବାସୀମାନେ ପ୍ରାୟ ସମସ୍ତେ ଓଡ଼ିଆ, ସିଂହଭୂମିର ଚତୁଃସୀମାରେ ଓଡ଼ିଆଦେଶ ଓ ଓଡ଼ିଆଭାଷା । ଉତ୍ତରରେ ସରାଇକଲା, ଦକ୍ଷିଣରେ କେନ୍ଦୁଝର, ପୂର୍ବରେ ମୟୂରଭଞ୍ଜ । ସିଂହଭୂମ ହିନ୍ଦୀ ଓ ବଙ୍ଗଭାଷାର ଉପଦ୍ରୁତ, ଅମ୍ଭେମାନେ ଓଡ଼ିଆଭାଷା ଦାବି କରୁଅଛୁଁ, ସେହିପରି ମଧ୍ୟପ୍ରଦେଶରେ ଅନେକ ଓଡ଼ିଆ ଅଛନ୍ତି ।

ଶ୍ରୀଯୁତ ବାବୁ ଶଶିଭୂଷଣ ରଥ—ମୁଁ ଆନ୍ତରିକସହିତ ପ୍ରସ୍ତାବଟି ଅନୁମୋଦନ କରେଁ ।

ଶ୍ରୀଯୁକ୍ତ ବାବୁ ଦୁଲାଲଚନ୍ଦ୍ର ପାଣି କହିଲେ :—

ମୁଁ ଜଣେ ମେଦିନୀପୁରର ଓଡ଼ିଆ । ଓଡ଼ିଆରେ ମୋର ଅଭିଜ୍ଞତା ନାହିଁ ଓଡ଼ିଆଭାଇମାନଙ୍କ ଆଦେଶ ଅନୁସାରେ ମୁଁ ଓଡ଼ିଆରେ କହିବି । ସନ ୧୯୧୧ ସାଲ ସେନ୍‌ସେସ୍ (Census) ରୁ ଜଣାଯାଏ ମେଦିନୀପୁରରେ ଅନେକ ଓଡ଼ିଆ ଅଛନ୍ତି, ବହୁକାଳ ବଙ୍ଗଅଧୀନରେ ରହି ଓଡ଼ିଆ ଭୁଲିଗଲେଣି, ଅମ୍ଭେ ଘରେ ବଙ୍ଗଳା କହୁଁ । ମେଦିନୀପୁର ଜିଲ୍ଲାର କାନ୍ଥିସହରରେ ଗୋଟିଏ ପ୍ରେସ ଅଛି । ସେଠାରେ ଓଡ଼ିଆ ପୁସ୍ତକମାନ ବଙ୍ଗଳା ଅକ୍ଷରରେ ମୁଦ୍ରିତ ହୋଇ ପ୍ରଚଳିତ ହୁଏ । ଆମ୍ଭମାନଙ୍କର ବନ୍ଧୁବାନ୍ଧବ ଓଡ଼ିଆ, ଅନେକ ବାଙ୍କୁଡ଼ା ଏବଂ ମାନଭୂମ ପ୍ରଭୃତିରେ ଅଛନ୍ତି । ଆମ୍ଭମାନଙ୍କୁ ଓଡ଼ିଆରେ ନ ହେଉ ବଙ୍ଗାକ୍ଷରରେ ଓଡ଼ିଆଭାଷା ଶିକ୍ଷା ଦିଆଯାଉ । କଚେରୀରେ ଭାଷା ଓଡ଼ିଆ ନ ହେବାରୁ ପକ୍ଷମାନଙ୍କର ଅନେକ ଅସୁବିଧା ହୁଏ ।

୧୧ଶ ପ୍ରସ୍ତାବ—

ବିଶାଖାପଟ୍ଟନ ଜିଲ୍ଲାସ୍ଥିତ ରଇତମାନେ ଓଡ଼ିଆ ହୋଇଥିଲେ ସୁଦ୍ଧା ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷମାନେ ସେମାନଙ୍କୁ ଓଡ଼ିଆବୋଲି ଗ୍ରହଣ କରୁ ନ ଥିବା ଅତି ଶୋଚନୀୟ ବିଷୟ ବୋଲି ଏହି ସମ୍ମିଳନୀ ଉପଲବ୍ଧି କରନ୍ତି ;

ପ୍ରସ୍ତାବକ ଶ୍ରୀଯୁକ୍ତ ବିକ୍ରମଦେବ ବର୍ମା କହିଲେ ଃ—

ଏ ପ୍ରସ୍ତାବ ଅଗତ କରି ଆପଣମାନେ ବିଶାଖାପତ୍ତନ ଓଡ଼ିଆମାନଙ୍କ ପ୍ରତି ସମ୍ପୂର୍ଣ୍ଣ ସହାନୁଭୂତି ଦେଖାଉଅଛନ୍ତି କାରଣ ସେଠାକାର କରଣମାନେ ସମ୍ପୂର୍ଣ୍ଣ ଓଡ଼ିଆ । ସେମାନଙ୍କ ମାତୃଭାଷା ଓଡ଼ିଆ । ସେମାନଙ୍କର ଉପାଧି ବେହେରା, ମହାନ୍ତି ଇତ୍ୟାଦି । ଜନଗଣନାରେ (Census) ସେମାନେ ଓଡ଼ିଆ ବୋଲି ଗୃହୀତ ହେଲେ ସରକାରବାହାଦୁର କହନ୍ତି ଯେ ତୁମ୍ଭେମାନେ ଓଡ଼ିଆ ନୁହଁ । ଏହାଦ୍ୱାରା ଓଡ଼ିଆଜାତିର ଗୋଟିଏ ବିଶେଷ କ୍ଷତି ହେଉଅଛି । ସମ୍ମିଳନୀ ପକ୍ଷରୁ ଗବର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରାଯାଉ ଯେ ସେମାନଙ୍କୁ ସରକାର ଓଡ଼ିଆ ବୋଲି ଗ୍ରହଣ କରନ୍ତୁ ।

ଅନୁମୋଦକ ଶ୍ରୀଯୁକ୍ତ ଉପେନ୍ଦ୍ର କର କହିଲେ ଃ—

ବିଶାଖାପତ୍ତନବାସୀ ଓଡ଼ିଆମାନେ ଓଡ଼ିଆକୁ ମାତୃଭାଷାରୂପେ ବ୍ୟବହାର କରୁଥିବାସ୍ଥଳେ ସରକାରବାହାଦୁର ସେମାନଙ୍କୁ ଓଡ଼ିଆ ବୋଲି ଗ୍ରହଣ ନ କରିବା ବଡ଼ କ୍ଷୋଭର ବିଷୟ ।

ସମର୍ଥକ ସୂର୍ଯ୍ୟନାରାୟଣ ପଟ୍ଟନାୟକ କହିଲେ ଃ—

The number of Karans in Vizag according to the last Census report is very large. There has been a great full of strength of the Oriyas—Karans are recognised as Oriyas in southern India. In such a case why are they treated as Telgus. As the Oriyas are enjoying their concessions in the Government report they are trying to cut short these privileges by calling them Telgus This is misrepresentation on the part of the clerks and some low-paid sub Inspectors. The Karans asked the Government to be recognised as Oriyas for in schools the concessions previously enjoyed was withdrawn. The Inspector of schools was approached who asked me to represent these facts before the Government. The Magistrate of Vizag enquired and reported that the Karans are Oriyas. I desire that you should represent these facts before the Government. They are Oriyas. They are not a new people to be called Oriyas. It is a damn disgrace to call them Telgus.

## ୮ମ ପ୍ରସ୍ତାବ—

ଓଡ଼ିଶାରେ ଆୟୁର୍ବେଦୀୟ ଚିକିତ୍ସାର ସମ୍ବନ୍ଧେ ଉତ୍କଳସମ୍ମିଳନୀ ସମୁଚିତ ଉପାୟ ଅବଲମ୍ବନ କରିବା ପ୍ରୟୋଜନୀୟ ବୋଲି ମନେ କରନ୍ତି ।

ପ୍ରସ୍ତାବଟି ଶ୍ରୀଯୁକ୍ତ କବିବର ଦାସ ଓଝା କହିଲେ:—

ବଡ଼ ଦୁଃଖର ବିଷୟ କବିରାଜଙ୍କ ପ୍ରତି ଆଦର ଆମଦେଶରେ ଏକେବାରେ କମିଯାଇଅଛି । ରୋଗ ପୀଡ଼ା-ଯନ୍ତ୍ରଣା ଦେବା ପ୍ରକୃତିର ନିୟମ । ତାହାର ତୀବ୍ରତା ହ୍ରାସ କରି ମାନବଜୀବନକୁ କିଛି ସୁଖକର କରିବା ସକାଶେ ବହୁକାଳ ମାନବ ଚେଷ୍ଟାରେ ଆୟୁର୍ବେଦ ପ୍ରଚଳିତ ହୋଇଅଛି । ଜାତି ବିଜ୍ଞାନର ଉନ୍ନତି କାଳରେ ଭାରତରେ ଅବନତି ହୋଇଅଛି । ଆୟୁର୍ବେଦଶିକ୍ଷା ମଧ୍ୟ ସମଦଶାପନ୍ନ । ଆମ ଦେହ ଦେଶୀ, ଦେଶୀ ଔଷଧ ଯେତେ ଆମ୍ଭର କାର୍ଯ୍ୟକର ହେବ ବିଦେଶୀ ଔଷଧ ସେତେ ହେବନାହିଁ । ଅଧିକ ବିଦେଶୀଚିକିତ୍ସା ବଡ଼ ବ୍ୟୟସାଧ୍ୟ । ଆମ ଦେଶ ଗରିବ । ଅଧିକାଂଶ ଲୋକ ଦୁଇବେଳ ଦୁଇମୁଠା ଖାଇ ଅନ୍ନ ପାନ୍ତି ନାହିଁ । ବ୍ୟାଧିଯୁକ୍ତ ହେଲେ ଡାକ୍ତରଙ୍କ ଫିସପାଇଁ ଟଙ୍କା କାହୁଁ ପାଇବେ ? ସରକାରବାହାଦୁରଙ୍କ ମଧ୍ୟ ଆୟୁର୍ବେଦଶିକ୍ଷା ପୁନରୁଦ୍ଧାରପ୍ରତି ଦୃଷ୍ଟି ପଡ଼ିଅଛି । ଆମ୍ଭମାନଙ୍କର ସରକାରଙ୍କୁ ଜଣାଇବା ଉଚିତ ଯେ କବିରାଜଦ୍ୱାରା ଆମ୍ଭେମାନେ ବେଶୀ ଉପକୃତ ହେଉଅଛୁଁ । ସରକାରବାହାଦୁରଙ୍କୁ ଦେଖାଇବା ଉଚିତ ଆମ୍ଭେମାନେ ନିଜବ୍ୟୟରେ କେତେଗୁଡ଼ିଏ କବିରାଜ ବିଦ୍ୟାଳୟ ସ୍ଥାପନ କରିଅଛୁଁ । ବାଲେଶ୍ୱରରେ ଗୋଟିଏ ସଂସ୍କୃତ ଟୋଲ ସଙ୍ଗେ ଆୟୁର୍ବେଦ ଶିକ୍ଷା ଦିଆଯାଏ । ପୁରୀ ଜଗନ୍ନାଥବଲ୍ଲଭମଠ ଟୋଲରେ ମଧ୍ୟ ବ୍ୟବସ୍ଥା ଅଛି । କେତେକ ଜଣଙ୍କ ଉଦ୍ୟମରେ କଟକରେ ଏହି ବର୍ଷ ହେବ ଗୋଟିଏ ଶ୍ରେଣୀ ଖୋଲା ହୋଇଅଛି । ଏହା ଓଡ଼ିଶା ପକ୍ଷରେ ଯଥେଷ୍ଟ ନୁହେଁ ।

ପ୍ରତ୍ୟେକ ଗ୍ରାମରେ ଜଣେ ଶିକ୍ଷିତ କବିରାଜ ରହିବା ବାଞ୍ଛନୀୟ । ଅବଶ୍ୟକ ସଂଖ୍ୟକ କବିରାଜଙ୍କୁ ଶିକ୍ଷାଦେବା ସକାଶେ ଅନେକଗୁଡ଼ିଏ ସ୍କୁଲ ଦରକାର । ସମ୍ମିଳନୀ ଏ ବିଷୟରେ ଯତ୍ନବାନ୍ ହେବେ ବୋଲି ମୋର ଆଶା ।

ଶ୍ରୀଯୁକ୍ତ ପଣ୍ଡିତ ଦାଶ ଓ ଶ୍ରୀଯୁକ୍ତ ବୃନ୍ଦାବନ ପଡ଼ିହାରୀ ପ୍ରସ୍ତାବଟିକୁ ଅନୁମୋଦନ ଓ ସମର୍ଥନ କଲେ ।

### ୧୩ ନିର୍ବାଚଣ—

ସଭାପତି ମହୋଦୟ ସ୍ୱେଚ୍ଛାସେବକମାନଙ୍କୁ ଧନ୍ୟବାଦ ପ୍ରଦାନ କଲେ ।

ଶ୍ରୀଯୁକ୍ତ ରାମନାରାୟଣ ମର୍ଦ୍ଦରାଜ, ବାବୁ ମୁକୁନ୍ଦପ୍ରସାଦ ଦାସ ଓ ମାନ୍ୟବର ବ୍ରଜସୁନ୍ଦର ଦାସ ବି,ଏ ସଭାପତିଙ୍କୁ ଧନ୍ୟବାଦ ଦେଲା ପରେ ଜନ୍ମ ଭୂମିର ସଙ୍ଗୀତଟି ଗୀତ ହୋଇ ସଭା ଭଙ୍ଗ ହେଲା ।

“ ମୋ ଜନନୀ—ସେ କି ନୁହେଁ ଭାରତର ମୁକୁଟମଣି ଗୋ ”

* * * * * *

ସମ୍ବଲପୁର ସମ୍ମିଳନୀରେ ଯେଉଁ ମହାତ୍ମାଙ୍କର ବଳ, ଉତ୍ସାହ ଓ ଦେଶହିତୈଷିତା ଉପରେ ନିର୍ଭର କରି ଆମ୍ଭେମାନେ ଦ୍ୱାଦଶ ଅଧିବେଶନକୁ ବାଲେଶ୍ୱରକୁ ଆହ୍ୱାନ କରିଥିଲୁଁ, ଦୈବଦୁର୍ବିପାକରୁ ସେହି ସ୍ୟାଚରଣ ଦାସ ରାୟ ବାହାଦୁର ସମ୍ମିଳନୀ ପୂର୍ବରୁ ଅକାଳକାଳକବଳରେ ପତିତ ହେଲେ । ଯେଉଁ ସ୍ୱର୍ଗୀୟ ମାନ୍ୟବର ମହାରାଜ ବୈକୁଣ୍ଠନାଥ ଦେ ବାହାଦୁରଙ୍କ ଯତ୍ନରେ ୧୯୦୭ ମସିହା ସମ୍ମିଳନୀର ବୈଠକ ଏପରି ସର୍ବାଙ୍ଗସୁନ୍ଦର ହୋଇଥିଲା, ସେ ମଧ୍ୟ ଏ ଅଧିବେଶନ ବେଳକୁ ଇହଧାମ ପରିତ୍ୟାଗ କରିଥିଲେ, ନେତାଶୂନ୍ୟ ବାଲେଶ୍ୱର ସମ୍ମିଳନୀରେ ଆମ୍ଭେମାନେ ଏକପ୍ରକାର ହତାଶ ହୋଇଥିଲୁଁ । ତାହାଉପରେ ପୂର୍ବ କାଳର ଶାସନକର୍ତ୍ତାଙ୍କର ହାବଭାବ ଓ ଓଡ଼ିଆ ଓ ପ୍ରବାସୀ ବଙ୍ଗାଳିମାନଙ୍କ ମଧ୍ୟରେ କେତେକଙ୍କ ସହିତ ମନୋମାଳିନ୍ୟ ଓ ନାନା ତର୍କନ ଗର୍ଜନର ସୃଷ୍ଟି ହୋଇଥିଲା । ଏଣୁ ଏ ସମ୍ମିଳନୀ ବାଲେଶ୍ୱରରେ ହେବା ଅସମ୍ଭବ ବୋଧ ହୋଇଥିଲା ଏପରି ଅବସ୍ଥାରେ ଯେ ଦ୍ୱାଦଶ ଅଧିବେଶନଟି ସୁଚାରୁରୂପେ ନିର୍ବିଘ୍ନରେ ସମ୍ପାଦିତ ହେଲା ଏହା କେବଳ ସେହି ମାନବର ଭାଗ୍ୟବିଧାତା ସର୍ବନିୟନ୍ତା ପରମେଶ୍ୱରଙ୍କ ଅପାର କରୁଣାର ଫଳ ଭିନ୍ନ ଅନ୍ୟ କିଛି ନୁହେଁ ।

କୌଣସି ଜାତୀୟ ଅନୁଷ୍ଠାନ ବ୍ୟକ୍ତିବିଶେଷ ଉପରେ ବା କେବଳ ରାଜା ମହାରାଜା ଓ ଧନକୁବେରମାନଙ୍କର କୃପାଦାନ ଉପରେ ନିର୍ଭର କରେ ନାହିଁ । ଜାତୀୟସ୍ରୋତର ରୋଧ କରିବାର ଶକ୍ତି କାହାରି ନାହିଁ । ଜାତୀୟ ଜୀବନ ଗଠନ, ଜାତୀୟ ଉନ୍ନତିକଳ୍ପ ମାନବ ମନକୁ ସ୍ପର୍ଶ କଲାମାତ୍ରେ, ଧନୀ, ଦରିଦ୍ର, ବୃଦ୍ଧ, ବାଳକ ପୁରୁଷ, ସ୍ତ୍ରୀ ସମସ୍ତେ ନିଜ ଜାତୀୟ ଯଜ୍ଞରେ ଆହୁତି ଢାଳନ୍ତି—କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥ ମିଳି ଏକ ବିରାଟ ସ୍ୱାର୍ଥରେ ପରିଣତ ହୁଏ । ଏହି ଶକ୍ତିର ପରିଚୟ ଆମ୍ଭେମାନେ ବାଲେଶ୍ୱର ସମ୍ମିଳନୀର ଦ୍ୱାଦଶ ଅଧିବେଶନରେ ଅନୁଭବ କରିପାରିଲୁଁ । ଅଶୀତିବର୍ଷ ବୃଦ୍ଧ ଫକୀରମୋହନ ଶତ ଯୁବକର ବଳ ଦେଇ ଅବତୀର୍ଣ୍ଣ ହେଲେ । ତାହାଙ୍କର ଆଦର୍ଶ ସାହସ ଓ ଉତ୍ସାହବାଣୀରେ ସମସ୍ତ ବାଲେଶ୍ୱର ନାଚିଉଠିଲା । କାର୍ଯ୍ୟନିର୍ବାହକସମିତି ଗଠିତ ହେଲା । ବହୁ କ୍ଷୁଦ୍ରଶକ୍ତି ମିଳି ଏକ ମହାଶକ୍ତିର ସୃଷ୍ଟି ହେଲା । ଏଥିସଂଲଗ୍ନ ପ୍ରକାଶିତ ଚାନ୍ଦା ତାଲିକାରୁ ସ୍ପଷ୍ଟ ଦେଖିପାରିବେ ଯେ ବାଲେଶ୍ୱର ଓ ତତ୍‌ସଂଲଗ୍ନ ମୟୂରଭଞ୍ଜ ଓ ନୀଳଗିରିର ସର୍ବସାଧାରଣ ଲୋକେ ଉଦାରଭାବରେ ନିଜର ଧନ ଓ ମନ ଢାଳିଦେଇଥିଲେ । ନିତାନ୍ତ ଦରିଦ୍ର ମଧ୍ୟ କିଛି ହେଲେ ଏହି ମାତୃପୂଜାରେ ଦାନ କରିଅଛନ୍ତି । ଏପରି କି ବାଲେଶ୍ୱର, ମୟୂରଭଞ୍ଜ

ଓ ନୀଳଗିରିର ପ୍ରତ୍ୟେକ ଗ୍ରାମ ସମ୍ମିଳନୀ ପାଣ୍ଠିକି ପୁଷ୍ଟି କରଥିଲେ । ମୟୂରଭଞ୍ଜର ଓକିଲ ଶ୍ରୀଯୁକ୍ତ ଲାଲମୋହନ ପତି ଓ ଶ୍ରୀଯୁକ୍ତ ଶରତ୍ଚନ୍ଦ୍ର ଦାସଙ୍କ ଉଦ୍ୟମ ଓ ସାହାଯ୍ୟ ବିଶେଷ ଉଲ୍ଲେଖଯୋଗ୍ୟ । ସେମାନେ ଅମ୍ଭମାନଙ୍କର ଏକାନ୍ତ ଧନ୍ୟବାଦର ପାତ୍ର । ବାଲେଶ୍ୱରର ପ୍ରସିଦ୍ଧ ଜମିଦାର ଶ୍ରୀଯୁକ୍ତ ବାବୁ ମନ୍ମଥନାଥ ଦେ ସମ୍ମିଳନୀପ୍ରତି ଅନାଦରବଶତଃ ଯୋଗ ନ ଦେଲେହେଁ ସେ ଏବଂ ମଣ୍ଡଳ ଜମିଦାରମାନେ ସେମାନଙ୍କ ଅନେକଗୁଡ଼ିଏ ଘର ସମ୍ମିଳନୀର ବ୍ୟବହାର ନିମିତ୍ତ ଦେଇ ନିଜ ହୃଦୟବତ୍ତାର ପରିଚୟ ପ୍ରଦାନ କରିଅଛନ୍ତି । କାର୍ଯ୍ୟନିର୍ବାହକସମିତି ସେମାନଙ୍କ ଉଦାରତା ନିମନ୍ତେ ଧନ୍ୟବାଦ ଅର୍ପଣ କରୁଅଛନ୍ତି ।

ମହାରାଜା ଶ୍ରୀରାମଚନ୍ଦ୍ର, ରାଜା ନୀଳଗିରି, ମହାରାଜା ବୈକୁଣ୍ଠନାଥ ଏବଂ ରାୟ ବାହାଦୁର ରାଧାଚରଣ ପ୍ରଭୃତିଙ୍କ ଅବର୍ତ୍ତମାନରେ ଯେ ବାଲେଶ୍ୱରରେ ଏହି ଜାତୀୟସମ୍ମିଳନୀ ବସିପାରିଥିଲା, ତାହା କେବଳ ଲୋକସାଧାରଣଙ୍କର ସମ୍ମିଳନୀ ଓ ଜାତୀୟଜୀବନପ୍ରତି ଶ୍ରଦ୍ଧା ଓ ଭକ୍ତି ଭିନ୍ନ ଆଉ ଅନ୍ୟ କିଛି ସୂଚନା କରୁନାହିଁ । ଏହି ଶ୍ରଦ୍ଧା ଓ ଭକ୍ତି ଦିନକୁଦିନ ବାଲେଶ୍ୱରବାସିଙ୍କ ହୃଦୟରେ ବୃଦ୍ଧିଲାଭ କରି ଉତ୍କଳର ଜାତୀୟ କଲ୍ୟାଣ ସାଧନ କରୁ ଏହାହିଁ ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

କୌଣସି ପ୍ରକାରେ ସମ୍ମିଳନୀର କାର୍ଯ୍ୟ ସମ୍ପାଦିତ ହୋଇଥିଲେହେଁ ତାହା ଯେ ତ୍ରୁଟିଶୂନ୍ୟ ହୋଇଅଛି ତାହା କହି ନ ପାରୁଁ । ନାନା ଅସୁବିଧାବଶତଃ ବିଦେଶାଗତ ଡେଲିଗେଟ୍ମାନଙ୍କର ଅଭ୍ୟର୍ଥନାର ବ୍ୟବସ୍ଥା ସୁଚାରୁରୂପେ ହୋଇ ନ ଥିଲା । ସେମାନେ ନାନାପ୍ରକାର ଅସୁବିଧା ଭୋଗ କରିଥିବେ । ଏହେତୁ ଅଭ୍ୟର୍ଥନା ସଭାର କାର୍ଯ୍ୟନିର୍ବାହକସମିତି ସେମାନଙ୍କଠାରେ କ୍ଷମା ପ୍ରାର୍ଥନା କରୁଅଛନ୍ତି । ଯେଉଁ ଭାଇମାନେ କାୟମନୋବାକ୍ୟରେ ଯେ, ଯେ ପ୍ରକାରେ ଯେତେ ଅଳ୍ପ ହେଲେ ସୁଦ୍ଧା ସାହାଯ୍ୟ କରିଅଛନ୍ତି, ଅମ୍ଭେମାନେ ସେମାନଙ୍କୁ ଅନ୍ତରର ସହିତ ଧନ୍ୟବାଦ ଅର୍ପଣ କରୁଅଛୁଁ ଏବଂ ଉତ୍କଳୀୟ ଭାଇମାନଙ୍କ ନିକଟରେ ଅମ୍ଭମାନଙ୍କର ତ୍ରୁଟି ନିମନ୍ତେ କ୍ଷମା ପ୍ରାର୍ଥନା କରୁଅଛୁଁ ।



# ଆୟର ପରିମାଣ ।

| | |
|---|---|
| ମୋଟ ଆୟ | ଟ ୨୪୩୪୵୩ |
| ଶ୍ରୀ ବାବୁ ଭଗବତପ୍ରସାଦ ମହାପାତ୍ର | ଟ ୧୦୲ |
| „ ଫକୀରମୋହନ ସେନାପତି | ଟ ୧୦୲ |
| „ ଲକ୍ଷ୍ମୀଧର ମହାପାତ୍ର ସାଃ ଭଣ୍ଡାରପୋଖରୀ | ଟ ୨୲ |
| „ ଶ୍ୟାମସୁନ୍ଦର ରାୟ ମହାପାତ୍ର ସାଃ ତାଳପଦ | ଟ ୫୲ |
| „ ବୈଦ୍ୟନାଥ ପଣ୍ଡା | ଟ ୨୲ |
| „ ରାୟ ସୁଦାମଚରଣ ନାୟକ ବାହାଦୁର | ଟ ୫୦୲ |
| ମାଧ୍ୟବର ରାଜାସାହେବ କନିକା | ଟ ୨୦୦୲ |
| ବାବୁ ରଘୁନାଥ ଦାସ ସାଃ ସୁନହଟ | ଟ ୪୲ |
| „ ଅନନ୍ତପ୍ରସାଦ ପାଢ଼ୀ | ଟ ୧୲ |
| „ ଉଦୟନାରାୟଣ ମହାପାତ୍ର ସାଃ ସାବରଙ୍ଗ | ଟ ୨୫୲ |
| ମୁନ୍‌ସି ଅବଦୁଲ ଗେଡ଼ାର ଖାଁ | ଟ ୧୲ |
| „ ମହମଦ ଗୋଲାପ ଖାଁ | ଟ ୨୲ |
| „ ସେର୍ଖ ବ୍ରାହ୍ମ | ଟ ୨୲ |
| ଶ୍ରୀ ବାବୁ ମୁକୁନ୍ଦପ୍ରସାଦ ଦାସ | ଟ ୧୩୷ |
| „ ବୈଷ୍ଣବଚରଣ ଦାସ | ଟ ୧୦୲ |
| ରାୟ ବାହାଦୁର ହରିହରନାରାୟଣ ରାୟମହାଶୟ | ଟ ୪୦୲ |
| ବାଲିଖଣ୍ଡ ଗ୍ରାମରୁ ଅଦାୟ | ଟ ୫୲ |
| ସୋରେ „ „ | ଟ ୫୲ |
| ଗୋପାଳପୁର „ „ | ଟ ୧୲ |
| ଗୋବିନ୍ଦପୁର ଭଡ଼ା „ „ | ଟ ୮୵ |
| ଢୋଠାର „ „ | ଟ ୪୲ |
| ସରସିଦା „ „ | ଟ ୪୫୷ |
| ଅସର୍ଦ୍ଦା „ „ | ଟ ୭୵ |
| ଶ୍ରୀ ବାବୁ କୈଳାସଚନ୍ଦ୍ର ପଧାନ | ଟ ୧୲ |
| „ କୃଷ୍ଣପ୍ରସାଦ ମହାନ୍ତି | ଟ ୧୦୲ |
| „ ଲକ୍ଷ୍ମୀନାରାୟଣ ଦାସ | ଟ ୧୲ |

| | |
|---|---|
| ଶ୍ରୀ ବାବୁ ଜାନକୀବଲ୍ଲଭ ମହାପାତ୍ର | ଟ ୧୲ |
| ବୈବର୍ତ୍ତ ଲାଲମୋହନ ମାହାନ୍ତି | ଟ ୪୲ |
| ବାଲିଅଠାଳିଆ ଅଦାୟ | ଟ ୧୲୷ |
| ମୟୂରଭଞ୍ଜ ଇଲାକାରୁ ଅଦାୟ | ଟ ୬୨୨୩୲୩ |
| ସେରଗଡ଼ ଗ୍ରାମରୁ ଅଦାୟ | ଟ ୪୫ |
| ଶାନଜଗର ,, ,, | ଟ ୧୫ |
| ଶ୍ରୀ ବାବୁ ପାର୍ବତୀଚରଣ ଦାସ | ଟ ୫୲ |
| ,, ଅର୍ଦ୍ଧେନ୍ଦୁ ମହାପାତ୍ର | ଟ ୧୲ |
| ତାଲପଦା ଗ୍ରାମରୁ | ଟ ୪୷ |
| ଶ୍ରୀ ବାବୁ ଘନଶ୍ୟାମ ମାହାନ୍ତି ଭାଏଙ୍କ ଦ୍ୱାରା ଅଦାୟ | ଟ ୫୦୲ |
| ଜାଉପୁର ଗ୍ରାମରୁ ଅଦାୟ | ଟ ୧୲ |
| ବାସୁଦେବପୁର ,, ,, | ଟ ୨୷ |
| ଶ୍ରୀ ବାବୁ ଗୋବିନ୍ଦପ୍ରସାଦ ମଜୁମଦାର | ଟ ୦୫ |
| ,, ଯାଦବାନନ୍ଦ ମହାପାତ୍ର ଭାଏ | ଟ ୨୦୲ |
| ,, କରୁଣାକର ସାହୁ | ଟ ୩ |
| ,, ଅଦ୍ୱୈତପ୍ରସାଦ ମାହାନ୍ତି | ଟ ୧୲ |
| ,, ସୂର୍ଯ୍ୟାନନ୍ଦ ପଣ୍ଡା | ଟ ୧୲ |
| ଧାମନଗର ଗ୍ରାମରୁ ପ୍ରାପ୍ତ | ଟ ୨।୷ |
| ଶ୍ରୀ ବାବୁ ଶିବପ୍ରସାଦ ଦାସ | ଟ ୨୲ |
| ଶ୍ରୀ ରସାନନ୍ଦ ପାଣିଗ୍ରାହୀ | ଟ ୫୲ |
| ବରୁଣସିଙ୍ଗ ଗ୍ରାମରୁ ଅଦାୟ | ଟ ୨୲ |
| ଶ୍ରୀ ବାବୁ ହାରଧର ସାହୁ | ଟ ୧୲ |
| ଅଣଡ଼ାଶାଳ ଗ୍ରାମରୁ | ଟ ୫୲ |
| ଶ୍ରୀ ବାବୁ ଲକ୍ଷ୍ମୀକାନ୍ତ ଭୂୟାଁ | ଟ ୨୲ |
| ,, ରାମପ୍ରସାଦ ମହାପାତ୍ର | ଟ ୪୲ |
| ,, ରାମଚନ୍ଦ୍ର ଦାସ | ଟ ୫୲ |
| ,, ଜନାର୍ଦ୍ଦନ ମହାପାତ୍ର | ଟ ୨୲ |
| ,, ଭାଗବତ ପାଣିଗ୍ରାହୀ | ଟ ୩୲ |

| | |
|---|---|
| ସନାଖଣ୍ଡି ଗ୍ରାମରୁ ଆଦାୟ | ଟ ୭୫/ |
| ଅରଲୋ ,, ,, | ଟ ୨୫ |
| ବାସୁଦେବପୁର ,, ,, | ଟ ୩୲ |
| କଣ୍ଟିଗ୍ରାମରୁ ଆଦାୟ | ଟ ୧୨/ |
| କୁଣ୍ଡଳୀ ,, | ଟ ୩/ |
| ଶ୍ରୀ ବାବୁ ମଦନମୋହନ ମହାନ୍ତି ସାଃ ମାଳଥି | ଟ ୧୲ |
| ନଦଭଙ୍ଗ ଗ୍ରାମରୁ ଆଦାୟ | ଟ ୪୲ |
| ଅଲଲଖ ଗ୍ରାମରୁ ଆଦାୟ | ଟ ୧୲ |
| ଶ୍ରୀ ବାବୁ ଫକୀର ପାଣିଗ୍ରାହୀ | ଟ ୨୲ |
| " ପଦ୍ମନାଭ ଦକ୍ଷିଣ ରାୟ | ଟ ୨୲ |
| ,, ଦିଗମ୍ବର ଦେ | ଟ ୨୲ |
| ,, ଡାଃ ନାୟକ ମୁଃ କଟକ | ଟ ୩୲ |
| ଆନନ୍ଦପୁର ମୁଃ ରୁ ପ୍ରାପ୍ତ | ଟ ୧୧୲ |
| ବ୍ରାହ୍ମଣୀ ଗାଁରୁ ପ୍ରାପ୍ତ | ଟ ୪୲ |
| ସାନରଙ୍ଗା ,, ,, | ଟ ୧୭୲ |
| ଶ୍ରୀ ବାବୁ ଦଧିରାମ ମହାନ୍ତି | ଟ ୯୲ |
| ,, ଉପେନ୍ଦ୍ରନାଥ ସାମନ୍ତରାୟ | ଟ ୨୲ |
| ,, ଶ୍ୟାମସୁନ୍ଦର ବଣ୍ଡାଳ | ଟ ୨୲ |
| ,, ଭଗବାନ୍ ପାଣ୍ଡା | ଟ ୧୲ |
| ଧାମନଗର ଶରଣଦା ଗ୍ରାମରୁ ପ୍ରାପ୍ତ | ଟ ୫୲ |
| ଶ୍ରୀ ବାବୁ ରାମଚନ୍ଦ୍ର ମହାପାତ୍ର । ସା । ବାଣସ୍ତାବାଦ | ଟ ୧୦୲ |
| ,, ବୈଦ୍ୟନାଥ ନାୟକ | ଟ ୨୲ |
| ଶ୍ରୀମତୀ ସୂର୍ଯ୍ୟମଣି ଦେଈ | ଟ ୧୦୲ |
| ଭୂସ୍ୱାମୀ ଶ୍ରୀ ଭାସ୍କରଚନ୍ଦ୍ର, ମହାପାତ୍ର ସାଃ ଏଡ଼ିଭାଲ | ଟ ୧୦୦୲ |
| ଅନନ୍ତପୁର ଗ୍ରାମରୁ ପ୍ରାପ୍ତ | ଟ ୪/ |
| ଘଣ୍ଟେଶ୍ୱର ଗ୍ରାମରୁ ପ୍ରାପ୍ତ | ଟ ୩୲ |
| ଶ୍ରୀ ବାବୁ ବରଦାପ୍ରସାଦ ପାଢ଼ୀ | ଟ ୧୦୦୲ |
| ଭଦ୍ରକ ପୁରୁଣା ବଜାରରୁ ପ୍ରାପ୍ତ | ଟ ୧୦୲ |

| | |
|---|---|
| ଜଗନ୍ନାଥପୁର ଗ୍ରାମରୁ ପ୍ରାପ୍ତ | ଟ ୩ ୧ |
| ଝିଙ୍କିଆ ,, ,, | ଟ ୬ ୧ |
| ମାଣ୍ଡପୁର ,, ,, | ଟ ୩୵ |
| ଶ୍ରୀ ମଦନମୋହନ ସେନା ସାଃ କୋରକସ | ଟ ୬ ୧ |
| କୋରଡସ ଗ୍ରାମବାସିମାନଙ୍କଠାରୁ ଅଦାୟ | ୦ ଟ ୧ ୧ |
| ଶ୍ରୀ ବାବୁ ପୁରୁଷୋତ୍ତମ ପଟ୍ଟନାୟକ | ଟ ୧୫ ୧ |
| ଜଗନ୍ନାଥପୁର ଗ୍ରାମରୁ ପ୍ରାପ୍ତ | ଟ ୧ ୧ |
| ଶ୍ରୀ ବାବୁ ବସ୍ତ ଦାଶ ସାଃ ନୂଆସାହି | ଟ ୧ ୧ |
| ,, ଶିବଶଙ୍କର ସେନା ସାଃ ନାହୋ | ଟ ୧ ୧ |
| ,, ଉଦୟନାଥ ମହାନ୍ତି ସାଃ କୁଞ୍ଜଶ | ଟ ୬ ୧ |
| ,, ଚୌଧୁରୀ ରଘାନାଥ ବସୁ ସାଃ ବାଲିଅପାଲ | ଟ ୬ ୧ |
| ,, ଅନିରୁଦ୍ଧ ଦାସ ସାଃ ବୀଜସ | ଟ ୧୦ ୧ |
| ବସନ୍ତିଆ ଗ୍ରାମରୁ ଅଦାୟ | ଟ ୪ ୧ |
| ଉଦ୍ଧବଦେଉଳା ,, ,, | ଟ ୭୷ |
| ଶ୍ରୀ ବାବୁ ଜୟକୃଷ୍ଣ ମହାପାତ୍ର ସାଃ ଭଦ୍ରକ | ଟ ୩ ୧ |
| ,, ବଳରାମ ମହାପାତ୍ର ସାଃ ସିରପୁର | ଟ ୪ ୧ |
| ,, ରୁଦ୍ରନାରାୟଣ ଷଡ଼ଙ୍ଗୀ | ଟ ୦ ୲ |
| ,, ଚୌଧୁରୀ ଦେବେନ୍ଦ୍ରଦାସ ମହାପାତ୍ର ସାଃ ଅଲାଲପୁର | ଟ ୧୫ ୧ |
| ଶ୍ରୀ ବଡବାବୁ | ଟ ୧ ୧ |
| ଶ୍ରୀ ବଳରାମ ବାବୁ କାଏବ ସାଃ ଉଚ୍ଚାପଟୁଆ | ଟ ୬୦ ୧ |
| ଶ୍ରୀ ବାବୁ ଗୋଲୋକପ୍ରସାଦ ଦାସ | ଟ ୪ ୧ |
| ଶ୍ରୀ ଚୌଧୁରୀ ବଳଭଦ୍ର ପ୍ରସାଦ ଦାସ ମହାପାତ୍ର | ଟ ୩୦ ୧ |
| ଶ୍ରୀ ବାବୁ ଭବଗାହି ବଷାଲ | ଟ ୬୷୵ |
| ଦୋବଲୋଗ୍ରାମରୁ ଅଦାୟ | ଟ ୪। |
| ଶ୍ରୀ ବାବୁ ହରଚନ୍ଦ୍ର ରାୟ ସାଃ ନରସିଂହପୁର | ଟ ୬ ୧ |
| ,, ପ୍ୟାରଶ୍ୟାମ ମହାପାତ୍ର | ଟ ୬।୵ |
| ଡମର୍ଦା ଗ୍ରାମରୁ ଅଦାୟ | ଟ ୭ ୧ |
| ଶ୍ରୀ ବାବୁ ନାରାୟଣପ୍ରସାଦ ପଣ୍ଡା ସାଃ ଖଣ୍ଡସ୍ତାପଡ଼ା | ଟ ୫ ୧ |

| | |
|---|---|
| ଶ୍ରୀ ବାବୁ ମଦନମୋହନ ଦାସ ସାଃ ନୂଆପାଡ଼ି | ଟ ୧୲ |
| ,, ମଧୁସୂଦନ ଦାସ ସାଃ ସାସଙ୍ଗ | ଟ ୧୲ |
| ସାସଙ୍ଗ ଗ୍ରାମରୁ ଆଦାୟ | ଟ ୫୲ |
| ବାମପଦା ,, ,, | ଟ ୧୶ |
| ବାଘର ,, ,, | ଟ ୧୴ |
| ରକ୍ତଗଡ଼ ,, ,, | ଟ ୧। |
| ଶ୍ରୀ ବାବୁ ମାଧବାନନ୍ଦ ମହାପାତ୍ର ସାଃ ବଡ଼ଗଣ | ଟ ୭। |
| ,, ଦୁର୍ଗାଚରଣ ବେଗ | ଟ ୨୲ |
| ,, କାର୍ତ୍ତିକଚନ୍ଦ୍ର ନନ୍ଦ | ଟ ୨୲ |
| ,, ଲକ୍ଷ୍ମୀଧର ମହାପାତ୍ର | ଟ ୩୲ |
| ଉଲମ ଗ୍ରାମରୁ ଆଦାୟ | ଟ ୧୷ |
| ଶ୍ରୀ ବାବୁ କାଶୀନାଥ ଦାସ ସାଃ ଟୋରେଇ | ଟ ୫୲ |
| ଟେଲବଣା ଗ୍ରାମରୁ ଆଦାୟ | ଟ ୭୴/ |
| ମୁଣ୍ଡନା ,, ,, | ଟ ୭୴ |
| ଶ୍ରୀ ବାବୁ ଯାଦବକୃଷ୍ଣ ଚୌଧୁରୀ ସାଃ ଜାଗୁଲା | ଟ ୫୲ |
| ,, ବୃନ୍ଦାବନଚନ୍ଦ୍ର ଦାସ | ଟ ୧୲ |
| ,, ପୁରୁଷୋତ୍ତମ ପଟ୍ଟନାଏକ | ଟ ୯୲ |
| ,, ରାଧାମୋହନ ଦାସ | ଟ ୧୦୦୲ |
| ଗରୁଡ଼ଆ ଗ୍ରାମରୁ ଆଦାୟ | ଟ ୨୲ |
| ମଲଙ୍ଗ ,, ,, | ଟ ୨୲ |
| ଜାଗୁଲା ,, ,, | ଟ ୧୲ |
| ଟୋଲସାହି ,, ,, | ଟ ୪୲ |
| ଖୁଣ୍ଟର ,, ,, | ଟ ୨୲ |
| ଶ୍ରୀ ବାବୁ ସାଧୁପ୍ରସାଦ ଗଦାଧର ମହାପାତ୍ର | ଟ ୨୦୲ |
| ,, ମଦନମୋହନ ପଟ୍ଟନାଏକ | ଟ ୫୲ |
| ,, ଗଦାଧର ମହାନ୍ତି ବଡ଼ଗଣ | ଟ ୧୲ |
| ମଙ୍ଗଳପୁର ଗ୍ରାମରୁ ଆଦାୟ | ଟ ୧୲ |
| ଅରସୋ ,, ,, | ଟ ୩୴/ |

| | |
|---|---|
| ଦୁର୍ଗାପୁର ଗ୍ରାମରୁ ଆଦାୟ | ଟ ୪ ( |
| ବରଷୋ ,, ,, | ଟ ୩ ( |
| ଏଡ଼ୁଗାଲ ,, ,, | ଟ ୮ ( |
| ଜନ୍ନପୁର ,, ,, | ଟ ୧ ( |
| ଗାଙ୍ଗପୁର ,, ,, | ଟ ୧ ( |
| ନୂଆପାଲ଼ୀ ,, ,, | ଟ ୪।୵ |
| ମଟୋ ,, ,, | ଟ ୧୳ |
| ବରଷୋ ,, ,, | ଟ ୩ ( |
| ବଗୁଜମୁଁଦା ,, ,, | ଟ ୧୳୵ |
| ମାହାଗଜ ,, ,, | ଟ ୬ ( |
| ଭାଣୋ ,, ,, | ଟ ୩ ( |
| ପୁଲଜା ,, ,, | ଟ ୪୳୵ |
| ଝୁଲଝୁଲି ,, ,, | ଟ ୨ ( |
| ଭାିଡେହା ,, ,, | ଟ ୬ ( |
| ବସ୍ତା ,, ,, | ଟ ୯୳୵ |
| ବହଲଦା ,, ,, | ଟ ୬ ( |
| ପାଣିଛଣ ,, ,, | ଟ ୩। |
| ଶ୍ରୀ ବାବୁ ପ୍ରହ୍ଲାଦ ଦାସ ସାଃ ପାଣିଛଣ | ଟ ୨ ( |
| ,, ଦଶରଥଚରଣ ଦାସ ସାଃ ଗୋପୀନାଥପୁର | ଟ ୨ ( |
| ,, ଦାମୋଦର ବୈଷ୍ଣବ | ଟ ୧ ( |
| ସଜନହଳଦାରୁ ଆଦାୟ | ଟ ୧୧୨।୵ |
| କୁଳଗାଁ ଗ୍ରାମରୁ ଆଦାୟ | ଟ ୬ ( |
| ଶ୍ରୀ ବାବୁ ସମଦାସପୂର୍ଣ୍ଣ ପଟ୍ଟନାୟକ | ଟ ୩୬ ( |
| ,, ରବିନ୍ଦ୍ରଚନ୍ଦ୍ର ମଲ୍ଲିକ | ଟ ୬୳ |
| ,, ମାଧବାନନ୍ଦ ମହାପାତ୍ର | ଟ ୩ ( |
| ଭେବଣା ଗ୍ରାମରୁ ଆଦାୟ | ଟ ୨ ( |
| ଶ୍ରୀ ବାବୁ ଜଗନ୍ନାଥପ୍ରସାଦ ଦାସ । ସା । ଗୋଗେ | ଟ ୨ ( |
| ସୁନବାଲ ମୁକ୍ତାମରୁ ଆଦାୟ | ଟ ୬ ( |

| | |
|---|---|
| ଶ୍ରୀ ବାବୁ ରାଧାଶ୍ୟାମ ଦାସ । ସା । ଭଣ୍ଡାପାର | ଟ ୪୦୲ |
| " ବୈକୁଣ୍ଠନାଥ ଦାସ | ଟ ୫୲ |
| " ଅଦ୍ୱୈତପ୍ରସାଦ ଦାସ | ଟ ୧୲ |
| " ପୁରୁଷୋତ୍ତମ ବେହେରା | ଟ ୨୲ |
| ମୌଃ ଗୋଲୋକନାରାୟଣ ପ୍ରହରାଜ ମାଡଧାରା | ଟ ୧୫୲ |
| ଶ୍ରୀ ବାବୁ ରାଧାପ୍ରସାଦ ଦାସଙ୍କ ଯୋଗ ଅମଲାମାନେ | ଟ ୮୲ |
| " ସଦାନନ୍ଦ ମହାନ୍ତି | ଟ ୨୲ |
| " ଘନଶ୍ୟାମ ଜେନା | ଟ ୨୲ |
| " ରଘୁନାଥ ଯେନା | ଟ ୧୲ |
| ମୁନସି ମହମ୍ମଦ ହନିଫ | ଟ ୨୲ |
| ଶ୍ରୀ ବାବୁ ଉମାକାନ୍ତ ଦାସ ସାଃ ବାନ୍ଧୁଖିଅ | ଟ ୩॥/ |
| " ପଦ୍ମନାଭ ଦାସ | ଟ ୧୲ |
| " କୃଷ୍ଣପ୍ରସାଦ ପାଣ | ଟ ୨୲ |
| " କୃଷ୍ଣଚରଣ ଦାସ ସାଃ ଅଗରପଡ଼ା | ଟ ୧୦୲ |
| ଭେଟଣା ମୁକାମରୁ ଆଦାୟ | ଟ ୧୮୲ |
| ବଡବାବୁଙ୍କଦ୍ୱାରା ଆଦାୟ | ଟ ୨୲ |
| କାର୍ଯ୍ୟନିର୍ବାହକ ସମିତିର ସଭ୍ୟମାନଙ୍କଦ୍ୱାରା ସଂଗୃହୀତ | ଟ ୮୪୲ |

୨୦୦

## ବ୍ୟୟର ପରିମାଣ ।

| | |
|---|---|
| ମୋଟ ବ୍ୟୟ | ଟ ୨୦୮୯।୶ ଖ |
| ପେଣ୍ଡେଲ ତିଆରି ଖରଚ | ଟ ୩୪୯।/ |
| ଚିଠି ଇତ୍ୟାଦି ଡାକମାସୁଲ | ଟ ୨୮୩୮ |
| ଆଲୁଅ | ଟ ୯୩୭୪୶ |
| ବରମ୍ପା ଓ ଛତି ମଧ୍ୟେ ରେଲଭଡ଼ା | ଟ ୫୬୯ |
| ପ୍ରତିନିଧିମାନଙ୍କ ସନ୍ଧ୍ୟାମିଳନ ଓ ଆଟହୋମ | ଟ ୯୮୭୮ |
| ସ୍ୱେଚ୍ଛାସେବକମାନଙ୍କପାଇଁ ପଗଡ଼ି | ଟ ୬୦୯ |
| ସମ୍ମିଳନୀ ପ୍ରଚାରକ ବେତନ | ଟ ୨୨୦୯ |
| ଛାତ୍ରସମ୍ମିଳନୀର ଛାତ୍ରମାନଙ୍କୁ ଏକଦିନ ଖାଇବାକୁ ଦେବା ଖରଚ | ଟ ୯୨୦୯ |
| ଶହର ପୂଜାରୀମାନଙ୍କ ମଜୁରି | ଟ ୯୯୫୯ |
| କର୍ମଚାରୀମାନଙ୍କ ବେତନ ଇତ୍ୟାଦି | ଟ ୮୫ ୯ |
| ଡେଲିଗେଟମାନଙ୍କ ପାଇଁ ଗାଡ଼ିଭଡ଼ା ଓ ଟେସନ ଓ ସ୍ୱେଚ୍ଛାସେବକମାନଙ୍କ ଖରଚ | ଟ ୨୦୮୯ |
| ଚନ୍ଦା ଆଦାୟପାଇଁ ଗାଡ଼ିଭଡ଼ା, ସରଭଡ଼ା ବଳଦଗାଡ଼ିଭଡ଼ା ଓ ଅନ୍ୟାନ୍ୟ ଆବଶ୍ୟକୀୟ ଖରଚମାନ | ଟ ୨୫୪। |
| ମୋଟ | ଟ ୨୦୮୯।୶ |

ଅବଶିଷ୍ଟ — ଟ ୩୫୨୫।୶୩ ମଧ୍ୟରୁ

ପ୍ରଚାରକଙ୍କ ବେତନ ଓ ସମ୍ମିଳନୀର କାର୍ଯ୍ୟବିବରଣୀ ଛପାଇ ଖରଚ ହୋଇଯିବ ।